ବୃହତ୍

# ଖନା ବଚନ

ବା

## ଡାକ ଋଷି ବଚନ

( ନୂତନ ମୁଦ୍ରଣ )

ପ୍ରଣେତା—ଶ୍ରୀ ଶ୍ୟାମସୁନ୍ଦର ନାୟକ

ଚୌଧୁରୀ ଶ୍ରୀ ମଧୁସୁଦନ ମହାପାତ୍ରଙ୍କ

ଅନୁମତି କ୍ରମେ ପ୍ରକାଶକ




ମୂଲ୍ୟ — ସାତଟଙ୍କା ପଚିଶ ପଇସା ମାତ୍ର

# ଖନାଙ୍କର ସଂକ୍ଷିପ୍ତ ଜୀବନୀ

ଧନ୍ୱନ୍ତରିଃ କ୍ଷପଣକାମରସିଂହଶଙ୍କୁ
ବେତାଳଭଟ୍ଟ ଘଟକର୍ପର କାଳିଦାସାଃ ।
ଖ୍ୟାତୋ ବରାହ ମିହିରୋ ନୃପତେଃ ସଭାୟାଂ
ରତ୍ନାନି ବୈ ବରରୁଚିର୍ନବ ବିକ୍ରମସ୍ୟ ।

ଧନ୍ୱନ୍ତରି, କ୍ଷପଣକ, ଅମରସିଂହ, ଶଙ୍କୁ, ବେତାଳଭଟ୍ଟ, ଘଟକର୍ପର, କାଳିଦାସ, ବରାହମିହିର ଓ ବରରୁଚି ଏହି ନଅଜଣ 'ନବରତ୍ନ' ଥିଲେ । ଏମାନେ ଉଜ୍ଜୟିନୀ ମହାନଗରରେ ରାଜା ବିକ୍ରମାଦିତ୍ୟଙ୍କର ରାଜସଭା ଅଳଂକୃତ କରୁଥିଲେ । ଏହିମାନେ ଆୟୁର୍ବେଦ, ଜ୍ୟୋତିଷ, ସାହିତ୍ୟ ଦର୍ଶନ ପ୍ରଭୃତି ବିଭିନ୍ନ ବିଷୟରେ ସର୍ବଜନପ୍ରୀତ ପଣ୍ଡିତ ଥିଲେ । ବରାହମିହିର ଏହି ନବରତ୍ନମାନଙ୍କ ମଧ୍ୟରେ ଅନ୍ୟତମ । ସେ ଜ୍ୟୋତିଷବିଦ୍ୟା ବିଶାରଦ, ତାଙ୍କର ଗଣନା ଅଭ୍ରାନ୍ତ ଏବଂ ଆଶ୍ଚର୍ଯ୍ୟ ଧରଣର ଥିଲା ।

ସେହି ସମୟରେ ଲୀଳାବତୀ ଅନ୍ୟ ଗୋଟିଏ ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । କିନ୍ତୁ ସମୁଦ୍ରମଧ୍ୟରେ ଥିବା କୌଣସି ଦ୍ୱୀପରେ ବାସକରୁଥିବା କେତେକ ରାକ୍ଷସ ଲୀଳାବତୀଙ୍କର ପିତୃରାଜ୍ୟରେ ପ୍ରବେଶକରି ତାଙ୍କୁ ସବଂଶରେ ମାରି ସେହି ରାଜ୍ୟରେ ବାସକରୁଥିବା ପ୍ରଜାମାନଙ୍କ ଓ ରାଜାଙ୍କର ରାଜକୋଷରୁ ସମସ୍ତ ଧନରତ୍ନ ଅପହରଣ କରିଥିଲେ, ମାତ୍ର ଲୀଳାବତୀଙ୍କୁ ଅଳ୍ପ ବୟସ୍କା କୁମାରୀ ଦେଖି ଏବଂ ତାଙ୍କର ସୌନ୍ଦର୍ଯ୍ୟାତିଶଯ୍ୟରେ ମୁଗ୍ଧ ହୋଇ ପ୍ରକୃତ ହିଂସାପରାୟଣ ରାକ୍ଷସମାନଙ୍କର ମଧ୍ୟ ହିଂସା ଦୂରୀଭୂତ ହେଲା । ସେମାନେ ଧନରତ୍ନ ସହିତରେ ସୁକୁମାରୀ ଲୀଳାବତୀଙ୍କୁ ଅକ୍ଷତ ଶରୀରରେ ନିଜ ଘରକୁ ନେଇଗଲେ । ସେଠାରେ ସ୍ୱକନ୍ୟା ନିର୍ବିଶେଷରେ ଲାଳନ ପାଳନ କଲେ ଏବଂ ନାନାବିଧ ଜ୍ୟୋତିଶାସ୍ତ୍ର ଶିକ୍ଷା ଦେଉଥିଲେ, ଯାହାଦ୍ୱାରା

ସେ ପୃଥିବୀର ସର୍ବଶ୍ରେଷ୍ଠା ଜ୍ୟୋତିଷୀ ରୂପରେ ନିଜର ପରିଚୟ ଦେଇଯାଇଛନ୍ତି ।

ଏଣେ ଉଜ୍ଜୟିନୀରେ ବରାହମିହିରଙ୍କର ଗୋଟିଏ ଶୁଭପୁତ୍ର ଜନ୍ମହେଲା । ଜ୍ୟୋତିଷ ବିଶାରଦ ପିତା ତାଙ୍କର ଜନ୍ମକୋଷ୍ଠୀବିଚାର କରୁ କରୁ ଶତବର୍ଷ ପରମାୟୁ ସ୍ଥଳରେ ଦଶବର୍ଷ ପରମାୟୁ ବୋଲି ସ୍ଥିର କଲେ । ବରାହମିହିରଙ୍କ ପରି ଜ୍ୟୋତିଷ ଶାସ୍ତ୍ରବିଦଙ୍କର ଏପରି ଭ୍ରମ ହେବାର କାରଣ କେବଳ ଦୈବ ବୋଲି ଧରିନେବାକୁ ହେବ । କାରଣ 'ନାସ୍ତି ଦୈବାତ୍ ପରଂ ବଳଂ' । ତେଣୁ ବରାହ ମିହିର ଦଶବର୍ଷ ପୁତ୍ରର ମୃତ୍ୟୁହେଲେ ଅଶେଷ କଷ୍ଟଦାୟକ ହେବଜାଣି ସଦ୍ୟଜାତ ଶିଶୁଟିକୁ ଗୋଟିଏ କାଷ୍ଠପାତ୍ରରେ ପୁରାଇ ନଦୀଗର୍ଭରେ ଭସାଇଦେଲେ । ଉକ୍ତ ପାତ୍ରଟି ଭାସି ଭାସି ଯାଇ ଲୀଳାବତୀ ଥିବା ଦ୍ୱୀପ ନିକଟରେ ଲାଗିଲା । ସେଠାରେ ଜଣେ ରାକ୍ଷସ ସଦ୍ୟଜାତ ସୁକୁମାର ଶିଶୁଟିକୁ ଦେଖି ତାହାର ରୂପଲାବଣ୍ୟରେ ଆକୃଷ୍ଟ ହୋଇ ନେଇ ଲୀଳାବତୀ ନିକଟରେ ରଖିଲା ଏବଂ ପୁତ୍ର କନ୍ୟା ନିର୍ବିଶେଷରେ ସୁକୁମାରୀ ଲୀଳାବତୀ ଓ ସୁକୁମାର ମିହିର ଏହି ଦୁଇଟିକୁ ଲାଳନପାଳନ କରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ଜ୍ୟୋତିଷ ବିଦ୍ୟା ଶିକ୍ଷାଦେଲେ । 'ଚକ୍ରବତ୍ ପରିବର୍ତ୍ତନ୍ତେ ଦୁଃଖାନି ଚ ସୁଖାନି ଚ' ଏହି ନିୟମରେ ସେହି କୁମାର କୁମାରୀ ଦୁଇଟି ଶୈଶବ ଅବସ୍ଥା ଅତିକ୍ରମ କରି ଯୌବନର ମଧ୍ୟସ୍ପର୍ଶରେ ଅଧିକ ରମଣୀୟତର ହେଲେ ଏବଂ ଏକତ୍ର ବାସହେତୁ ପରସ୍ପରର ପ୍ରତି ପ୍ରେମ ଦୃଷ୍ଟି ପଡ଼ିଲା । ଏହା ସୃଷ୍ଟି ପ୍ରକୃତିର ନିୟମ । ନବ ଯୁବତୀର ସଂସ୍ପର୍ଶରେ ଆସିଲେ ଯୁବକ ବା ଯୁବକର ସଂସ୍ପର୍ଶରେ ଆସିଲେ ଯୁବତୀ ନିଜକୁ ସମ୍ଭାଳି ନ ପାରି ଯୌବନର ତରଳ-ଉଚ୍ଛଳତରଙ୍ଗରେ ଭସାଇଦିଅନ୍ତି । ସୁତରାଂ ଏହି ନବଯୁବକ ଯୁବତୀ ତାହା ସୃଷ୍ଟି କରିବାରେ କୌଣସି ବୈଚିତ୍ର୍ୟ ନାହିଁ ।

ମନୁଷ୍ୟର ମନ ସବୁବେଳେ ସ୍ୱାଧୀନ । ସୁତରାଂ ଏହି ଦୁର ରାକ୍ଷସମାନଙ୍କର ବନ୍ଦୀତ୍ୱରେ ରହି ପିଞ୍ଜରାବଦ୍ଧପକ୍ଷୀ ମୁକ୍ତ ବନବାସ କାମନା କଲାପରି ନିଜର ମୁକ୍ତି କାମନା କରୁଥିଲେ । ମାତ୍ର ତାହା ସମ୍ଭବପର ହୋଇ ନଥିଲା, କାରଣ ଚତୁଃପାର୍ଶ୍ୱରେ ଉତ୍ତାଳତରଙ୍ଗ ସମୁଦ୍ର, ସେଥିରେ ପୁଣି ମାର୍ଜ୍ଜାପୁ ନିଷ୍ଠୁର ରାକ୍ଷସମାନେ ପ୍ରହରୀ । ଯାହାହେଉ ଯେତେବେଳେ ମୁକ୍ତିର ସମୟ ଆସେ, ସେତେବେଳେ ଜଗତର ସମସ୍ତ ଶକ୍ତି ଏକତ୍ର ହୋଇ ସୁଦ୍ଧା ତାହାର ଅବରୋଧ କରି ପାରନ୍ତି ନାହିଁ । ସୁତରାଂ ଦୁହେଁ ଯାକ ଗଣନା କରି ମାହେନ୍ଦ୍ର ମୁହୂର୍ତ୍ତ ସ୍ଥିର କରି ଘରୁ ବାହାରି ପଡ଼ିଲେ ଲକ୍ଷ୍ୟହୀନ ଭାବରେ ।

ପ୍ରହରୀ ସଂଗେ ସଂଗେ ତାଙ୍କର ଦଳପତିଙ୍କୁ ସମ୍ବାଦ ଦେଲା । ମାତ୍ର ଦଳପତି ଭାବିଲା ଯେ ଏମାନେ ମାହେନ୍ଦ୍ର ବେଳରେ ଅନୁକୂଳ କରିଥିବାରୁ ନିଶ୍ଚୟ କୃତକାର୍ଯ୍ୟ ହେବେ । ତେବେ ଅପଥରେ ବାଧା ଦେବା ଉଚିତ ନୁହେଁ । ତହୁଁ, ଜଣେ ରାକ୍ଷସକୁ ଡାକି କହିଲେ, ତୁମେ ଏହି ଦୁଇଜଣଙ୍କୁ କାନ୍ଧରେ ବସାଇ ସମୁଦ୍ରର ଆରପାରରେ ଛାଡ଼ିଦେଇ ଆସିବ ଏବଂ ଏହି ଆକାଶ ତତ୍ତ୍ୱ ପୃଥିବୀ ତତ୍ତ୍ୱ ଓ ପାତାଳ ତତ୍ତ୍ୱ ପୁସ୍ତକ ତିନିଖଣ୍ଡ ଦେଇ ଗୋଟିଏ ପ୍ରଶ୍ନ କରିବ । ପ୍ରଶ୍ନଟିର ଉତ୍ତର ଦେଲାପରେ ପୂର୍ବୋକ୍ତ ପାତାଳତତ୍ତ୍ୱ ପୁସ୍ତକଖଣ୍ଡିକ ତାଙ୍କଠାରୁ ନେଇ ଆସିବ । ଭୃତ୍ୟ ପ୍ରଭୁଙ୍କର ଆଦେଶରେ ସେହିପରି କଲା । ସମୁଦ୍ର ଏ ପାଖରେ ମିତ୍ରଙ୍କୁ ଗୋଟିଏ ପ୍ରସବ କଷ୍ଟ ପାଉଥିବା ଗାଈକୁ ଦେଖାଇ ଗର୍ଭସ୍ଥ ସନ୍ତାନର ବର୍ଣ୍ଣ କିପରି ହେବ ବୋଲି ପଚାରିବାରୁ ମିତ୍ରର ଶୁକ୍ଳବର୍ଣ୍ଣ ହେବ କହନ୍ତେ, ରାକ୍ଷସ ପାତାଳତତ୍ତ୍ୱ ପୁସ୍ତକଖଣ୍ଡିକ ନେଇ ଚାଲିଗଲେ । କିଛିକ୍ଷଣ ପରେ ଗାଈଟି ଗୋଟିଏ ବାଛୁରୀ ଜନ୍ମକଲା । ସେ ବାଛୁରୀଟିର ବର୍ଣ୍ଣ ଅଳ୍ପ ରକ୍ତ ବର୍ଣ୍ଣ ଦିଶିବାରୁ ମିତ୍ରର ବିରକ୍ତ ହୋଇ ପୂର୍ବୋକ୍ତ ପୁସ୍ତକ ଦୁଇଖଣ୍ଡି ତାହା ସମୁଦ୍ରକୁ ପକାଇଦେଲେ । ମାତ୍ର ପରେ ବାଛୁରୀଟି ଶୁକ୍ଳବର୍ଣ୍ଣ ଜାଣିପାରି ବଡ଼

ପରିଶ୍ରମ କରି ଉକ୍ତ ପୁସ୍ତକର କେତେକ ଅଂଶ ପାଇ ଉଜ୍ଜୟିନୀରେ ଆସି ପହଞ୍ଚିଲେ । ବରାହ ମିହିର ନିଜର ତ୍ୟକ୍ତ ପୁତ୍ରକୁ ପାଇ ଏବଂ ସମସ୍ତ ଘଟଣା ଗଣନାଦ୍ୱାରା ଜାଣିପାରି ପୁଅ ଓ ବୋହୂକୁ ଆଦରରେ ରଖିଲେ ।

ଯେପରି ଆକାଶରେ ମେଘର ଘନଘଟା ପୂର୍ଣ୍ଣଚନ୍ଦ୍ରକୁ ଢାଙ୍କି-ପାରେ ନାହିଁ ସେହିପରି ଗୁଣ କେବେ ଲୁଚିରହେ ନାହିଁ । କ୍ରମେ ରାଜା ଏବଂ ରାଜସଭାରସମସ୍ତ ସଦସ୍ୟମାନେ ଲୀଳାବତୀଙ୍କର ଧୀମତ୍ତାର ପରିଚୟ ପାଇ ତାଙ୍କୁ ରାଜସଭାରେ ସ୍ଥାନ ଦେଲେ । ଏଦ୍ୱାରା ବରାହ ମିହିର ନିଜକୁ ଅପମାନିତ ମନେକଲେ । କାରଣ ତାଙ୍କର ଖ୍ୟାତି ଦିନକୁ ଦିନ କମିଲା, ତାଙ୍କର ପ୍ରତିହିଂସା ଦିନକୁ ଦିନ ପ୍ରବଳ ହେଲା । ସେ ଦିନେ ନିଜପୁତ୍ର ମିହିରକୁ ଡାକିକହିଲେ 'ପୁତ୍ର' । ତୁମେ ଲୀଳାବତୀର ଜିହ୍ୱା ଛେଦନ କର ତା ନ ହେବେ ଆମ୍ଭର ସମ୍ମାନ ରହିବ ନାହିଁ । କଣ କରିବେ ପିତାଦେଶ ଅଲଂଘ୍ୟ । କାରଣ—

'ଆଜ୍ଞା ଗୁରୁଣାମବିଚାରଣୀୟା' । ତେଣୁ ସେ ବାଧ୍ୟ ହୋଇ ଛୁରିକା ହସ୍ତରେ ଲୀଳାବତୀଙ୍କ ନିକଟରେ ପହଞ୍ଚିଲେ । ଲୀଳାବତୀ ଜାଣିପାରି କହିଲେ, ସ୍ୱାମୀନ୍,ଦେବତା ! ଚିନ୍ତାକାହିଁକି ? ପିତାଦେଶ ପାଳନ କରନ୍ତୁ ମାତ୍ର ତାହା କରିବାପୂର୍ବରୁ ମୋଠାରୁ କେତେକ ଜ୍ଞାନ, କୃଷିତତ୍ତ୍ୱ ଜ୍ୟୋତିଷର ଅନେକ ସାରକଥା ଏହିପରି ଅନେକ ବିଷୟରେ ସେ କହିଯାଇଥିଲେ, ଯାହାକି ଆପଣମାନେ ଏହି ପୁସ୍ତକରେ ପାଇବେ । ତାହା ପରେ ମିହିର ପିତାଙ୍କ ଆଦେଶରେ ପ୍ରିୟତମା ପତ୍ନୀଙ୍କର ଜିହ୍ୱା ଛେଦ କଲେ । ସେହିଦିନଠାରୁ ଖନା ହେଲେ । ତେଣୁ ଖନାର କଥାକୁ 'ଖନାବଚନ' ବୁଝାଯାଏ, ଏହାହିଁ ଦେଶ ପ୍ରଚଳିତ କିମ୍ବଦନ୍ତୀ ବୋଲି ଜାଣିବାକୁ ହେବ । ଇତି ।

ପ୍ରଣେତା

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ

| ବିଷୟ | ( ଚ ) | ପୃଷ୍ଠାଙ୍କ |
|---|---|---|



## ଦ୍ୱିତୀୟ ଅଧ୍ୟାୟ



## ତୃତୀୟ ଅଧ୍ୟାୟ

## ଚତୁର୍ଥ ଅଧ୍ୟାୟ



## ପଞ୍ଚମ ଅଧ୍ୟାୟ



## ଷଷ୍ଠ ଅଧ୍ୟାୟ



—:×:—

### ବୃହତ୍

# ଖନା ବଚନ

### ବା

### ଡ଼ାକ ଋଷି ବଚନ

## ଧନୀ ଓ ଦରିଦ୍ର ହେବାର ଲକ୍ଷଣ

ଖଟି ଖଟି ଲଭ ପାଏ । ତାର ଅର୍ଦ୍ଧେକ ଯେ ନିତ ଧାଏଁ ।
ଘରେ ବସି କହେ ବାତ୍, ତାର ଘରେ ହା ଭାତ୍ । ୧ ।

ଭୃତ୍ୟଙ୍କୁ ସଙ୍ଗରେ ଘେନି ସକଳ କାଳରେ । କୃଷି କର୍ମ କରେ ଯେହୁ ଆପଣା ହସ୍ତରେ । ଆପେକରି କରାଇବା ଅଭ୍ୟାସ ଯାହାର ବିଶେଷ ଭାବରେ ଲାଭ ହୁଅଇ ତାହାର ।। ଯେଉଁ ପ୍ରାଣୀ ନିଜେ ନ କରିଣ ଅନ୍ୟ ହସ୍ତେ । କୃଷି କର୍ମରେ ଅର୍ଦ୍ଧ ଲାଭ ତା ସନ୍ତତେ । ଏ ବେନି କଥାକୁ ତେଜି ଅଳସ ଭାଇରେ । ଯେଉଁ ପ୍ରାଣୀ ବସିରହେ ନିତି ଦିବସରେ ।। ଅନ୍ନବିନା ହାହାକାର ହୋଇଣ ନିରତ । ଜୀବନ ତେଜଇ ସେହୁ ବୁଝ ହେଳୁବନ୍ତ । ୧ ।

## ଶସ୍ୟାଦି ରୋପଣ ସମୟ

ଶ୍ରାବଣ ପୂର, ଭାଦ୍ରବେ ବାର, ଏହାର ମଧ୍ୟେ ଯେତେ ପାର ।

ଶୁଣହେ କୃଷକମାନେ ହୋଇ ହର୍ଷ ଚିତ୍ତ । ଶସ୍ୟ ରୋପଣ ନିୟମ ସେବନ ପ୍ରଶସ୍ତ । ତାହା ବୁଝାଇ କହିବା ସରଳ ଭାବରେ । ଖନା ଯାହା କହିଛନ୍ତି ମିହିର ଆଗରେ ।। ଶସ୍ୟ ବୋଲନ୍ତେଣ ଧାନ୍ୟ ପ୍ରଭୃତି ଅର୍ଥରେ । ରୋପଣ କରିବ ନେଇ ଯଥା ସମୟରେ ।। ଶ୍ରାବଣ ମାସ ଆଦ୍ୟର ଭାଦ୍ରବ ମାସର । ଦ୍ୱାଦଶ ଦିବସ ଯାଏ ରୋପିଲେ ନିକର ।। ବହୁତ ଫଳ ଫଳଇ ଧାନ୍ୟାଦିରେ ଜାଣ । ଖନାର ବଚନ ଏହା ନୁହେଁ ଅପ୍ରମାଣ । ୨ ।

## ଦେଶର ଶୁଭ ଲକ୍ଷଣ ନିର୍ଣ୍ଣୟ

ଅନ୍ଧାର ପରେ ଚନ୍ଦ୍ରର କଳା, କେତେକ କଳା କେତେକ ଧଳା । ଉତ୍ତରେ ଉଚ ଦକ୍ଷିଣେ ନୀଚ, ଧରାରେ ହୁଅଇ ଧାନ୍ୟର ଜାତ । ଧାନ ଗୁଡ଼ଜ ଏକେବ ଶସ୍ତା, ସୁମିଷ୍ଟ ନଗର ମନୁଷ୍ୟ କଥା

ଶୁକ୍ଳ ପକ୍ଷ ଆଦ୍ୟେ ଚନ୍ଦ୍ର ଉଦୟ ହବଧେ । ନରେଖି ଦେଖିବ ମନେରଖି ସୁବଦୁଷେ । ଚନ୍ଦ୍ର ମଣ୍ଡଳରେ ବର୍ଣ୍ଣ କେତେକ ଧବଳ । କେତେକ କଳଇ ପୂର୍ଣ୍ଣ କଳା ପ୍ରତିକୂଳ୍ୟ । ଉଭୟ ପାର୍ଶ୍ୱ ତାହାର ଉଚ ହୋଇଥିବ । ଦକ୍ଷିଣ ଭାଗ ନିମ୍ନାଂଶ ପରିପୂର୍ଣ୍ଣ ଦଶିବ ॥ ସେହି ବର୍ଷ ପୃଥିବୀରେ ବହୁଶସ୍ୟ ହେବ । ପ୍ରାଣୀମାନଙ୍କ ଭଣ୍ଡାର ଅକ୍ଷୟ ରହିବ । ଧାନ୍ୟ ଚଣ୍ଡୁକ ପ୍ରଭୃତି ମିଳିବ ଅବଶ୍ୟ । ପ୍ରାଣୀମାନେ ନିରନ୍ତର ହେବେ ସୁହୃଦ ॥ ସେହିବର୍ଷ ଅନ୍ନାଭାବ ନ ହୋଇବ କାର । ମହୀପରେ ମିଷ୍ଟଭାଷୀ ହେବ ସର୍ବନର । ଆନନ୍ଦ ମନରେ ସବୁପ୍ରାଣୀ ନିରନ୍ତର । ଖନା ବୋଲେ କରୁଥିବ ପର ଉପକାର ।୩

## ଧାନ୍ୟ ବେଉଷଣ ନିର୍ଣ୍ଣୟ

ଆଷାଢ଼େ ବଢ଼ାଣ ନାମକୁ, ଶ୍ରାବଣେ ବଢ଼ାଅ ଧାନକୁ ।
ଭାଦ୍ରବେ ବଢ଼ାଣ ନ୍ୟୂବ, ଆଶ୍ୱିନେ ବଢ଼ାଣ ଶୂନ୍ ।୪ ।

ଧାନ୍ୟ ବେଉଷଣ ବିଧି ଚଷାଭାଇ ଶୁଣ । ଆଷାଢ଼ ମାସରେ ଯେତେ ଚଳାଇବୁ ମନ । କାହିଁ ହୁଏ କାହିଁ ନୁହେଁ ନୁହଇ ଉତ୍ତମ । ଶ୍ରାବଣ ବେଉଷଣରେ ଫଳେ ଧାନ୍ୟ ॥ ଭାଦ୍ରବରେ ଯେବେ ବେଉଷଣ କୁ କରିବୁ । ସାମାନ୍ୟ ଭାବରେ କିଛି ଫଳପ୍ରାପ୍ତ ହେବୁ । ଆଶ୍ୱିନ ମାସକୁ ଯେବେ ରହିବ ପଡ଼ିଲ । ଅମଳ ବେଳେ ବସିବୁ ମୁଣ୍ଡେ ହାତ ଦେଇ । ୪ ।

## ଧାନ, ମୂଳା ତୁଳା ଓ ପାନବୃକ୍ଷ ବିଧି

ଷୋଳ ହାତେ ମୂଳା, ତାର ଅର୍ଦ୍ଧେକ ତୁଳା
ତାର ଅର୍ଦ୍ଧେକ ଧାନ, ବିନା ହାତେ ପାନ । ୫ ।

ମୂଳା ଲଗାଇବାପାଇଁ ବଳାଇଲେ ମନ । ସେ ଜମିକୁ ଖୋଳ
ଖୁବ କରି ଦେଇ ଘନ ॥ କୁଳା ଜମିକୁ ଚଷିବ ଦିବସ ଅଷ୍ଟମ ।
ଧାନ୍ୟ ଜମି ଖୁରଘନ ଚଷିବ ଉତ୍ତମ ॥ ପାନ ଜମିରେ ଯେ ଖୁବ
ନାହିଁ ଦରକାର । ଉଡା ଖୁଷରେ ହୁଅଇ ଅଦ୍ଭୁତ ପ୍ରକାର ।୫।

## ଜମି ଓ ଗୋରୁ କ୍ରୟ କରିବା ବିଧି

ଘର ପାଖେ ଜମି ବହୁତ ଅଚ୍ଛା, କାରଣ ଯେତେ ମନ
ଇଚ୍ଛା ॥ ଖନ୍ତ ନଖନ୍ତ ଚଷା ଯାଇ, ନିଜ ଗାଁ ଗୋରୁ କିଣ ଯାଇଁ ॥
ନ ଦେଖି ଗୋରୁକୁ କିଣିବୁ ନାହିଁ, କିଣିଲେ କାନ୍ଦିବୁ ନାକ ଫୁଲାଇ ।

ଗୃହ ନିକଟରେ ଜମି କଲେ ଭୟ ନାହିଁ । ନିରନ୍ତରେ ତା
ଉପରେ ଦୃଷ୍ଟି ଥାଏ ରହି ॥ ଦୂର ଜମିରୁ ଉଜାଡ଼ ହୁଅଇ ବହୁତ ॥
ତେଣୁ ତାକୁ ଆଦରିବ ନାହିଁ କଦାଚିତ ॥ ଗୋରୁ କିଣିବାକୁ ଯେବେ
ମନବଳାଇବ । ନିଜ ଗ୍ରାମ ଗୋରୁ ଦେଖି ନଦେଖି କିଣିବ । ଦୂରରୁ
ଆଣିଲେ ଦେଖି ଶୁଣି ବୁଝି କରି କିର । ନୋହିଲେ ହାନିସ୍ତି ଅଙ୍କ
ସଙ୍ଗେ ହେବ ସତ । ୬ ।

ବାପ ପୁଅ ମିଳି କରିବ ଖୁଷ, ପର ଆସରେ ସରବନାଶ ।
ଭାଇ ଭାଇମିଳି କରନ୍ତି କୃଷି, ଅବଶ୍ୟ ବହୁତ ପ୍ରାଣୀଙ୍କି ପୋଷି ।୭

ପରକୁ ଭରସା ଦେଇ କୃଷି ନ କରିବ । ପିତା ପୁତ୍ର ସଙ୍ଗ
ହୋଇ ଖୁଷରେ ଲାଗିବ ॥ ଭାଇ ଭାଇ ମିଳି ଯେହୁ କରିବେଟି ଖୁଷ ।
ଅବଶ୍ୟ ତହିଁରେ ଲାଭ ହୁଅଇ ବିଶେଷ ॥ ପ୍ରତିପୋଷଣ ସେ ଧନେ
ବହୁପ୍ରାଣୀ ହୋନ୍ତି । ଯଶ ପ୍ରଶଂସାମାନ ସବୁଠାରୁ ଲଭନ୍ତି ।୮।

## ଧାନ୍ୟ ରୋପଣ ବିଧି

ଆଷାଢ଼ ମାସରେ ପଞ୍ଚ ଦିବସେ, ଧାନ୍ୟ ରୋପଣ ଯେ କରେ
ହରଷେ । ତାହେବେ ବହୁତ ଫଳଇ ଫଳ, ପରିପୂର୍ଣ୍ଣ ହୁଏ ଆଶା
ସକଳ ।

ଆଷାଢ଼ ମାସର ପଞ୍ଚ ଦିବସ ମଧ୍ୟରେ । ଧାନ୍ୟ ରୋପଣ କରଇ

ଯେତ୍ତ ବରଷରେ ।। ବହୁତ ଫଳ ଲାଭ ହୁଅଇ ତାର ଜାଣ । ଆଶା ପୂର୍ଣ୍ଣ କର ମହାନନ୍ଦେ କାଟେ ଦିନ । ୮ ।

## ହଳ ଯୁଳନା ନିୟମ

ଶୁଭକ୍ଷଣେ ହଳଧର ଯାହା, ପଥେ ଯେତ୍ତେ ନୁହେଁ ଅଶୁଭ ବାର୍ତ୍ତା ।
ପ୍ରଥମେ ଚୌଦ୍ଦଗେ ବୁଝିବ ଜାଣି, ପୂର୍ବଦିଗୁ ହଳ ଯୁଳିବ ପୁଣି ।
ମନୋରଥ ସବୁ ହୋଇବ ପୂର୍ଣ୍ଣ, ଖଣାବଚନ ଏ ନୁହଇ ଆନ ।

ହଳ ଯୁଳନାର ବେଳ ବୁଝିବେ ସୁଜନ । ଶୁଭବେଳ ଦେଖି ବେଶ କରିବ ଗମନ ।। ପଥ ମଧ୍ୟେ ଅମଙ୍ଗଳ ଦ୍ରବ୍ୟ ନ ଦେଖିବ । ଦେଖିଲେ ଫେରିଣ ପୁଣି ଯାତ୍ରାକୁ କରିବ ।। ପ୍ରଥମରେ ଚଉଦିଗ ନିର୍ଣ୍ଣୟ କରିଣ । ପୂର୍ବଦିଗୁ ଆରମ୍ଭ କରିବ ତତକ୍ଷଣ ।। ଏମନ୍ତ ନିୟମ ପାଳି ହେ ଚଳାଏ ହଳ । ମନୋବାଞ୍ଛା ପୂର୍ଣ୍ଣ ତାର ହୁଅଇ ଉଜ୍ଜଳ । ବହୁତର ଧନ ତାହାକୁ ପ୍ରାପତ ହୁଅଇ । ଖଣାର ବଚନ ଜେଭେ ଅନ୍ୟଥା ନୁହଇ । ୯ ।

## ହଳ ନିଷେଧ ଦିବସ ନିର୍ଣ୍ଣୟ

ପୂର୍ଣ୍ଣିମା ଅମାରେ ଯେ କରେ ହଳ, ତା କପାଳେ ଦୁଃଖଟି ଚିରକାଳ
ବଳଦର ତାର ହୁଅଇ ବାତ, ଖାଇବାକୁ ଗଣ୍ଡେ ନ ମିଳେ ଭାତ ।
ଖଣା କହେ ଶୁଣହେ ଚଷାଭାଇ, ମହାପାପ ତାର ଅଙ୍ଗେ ଲାଗଇ ।

ପୂର୍ଣ୍ଣିମା ଅମାବାସ୍ୟା ଏ ବେନି ଦିବସରେ । ଯେଉଁ ପ୍ରାଣୀ ହଳ କରେ ନୃଶଂସ ଭାବରେ ।। ଚିରକାଳ ଦୁଃଖପୀଡ଼ା ସେ ଭୋଗକରଇ ହା ଅନ୍ନ ହା ଅନ୍ନ ହୋଇ ଦିବସ ଯାପଇ । ଇହକାଳ ପରକାଳେ ସୁଖ ନ ଲଭଇ । ତା ବଳଦ ବେନି ବାତବ୍ୟାଧି ପ୍ରବେଶଇ । ଦୁଃଖ ବିନା ସୁଖ ତାର ନହୁଅଇ ଲେଶ । ତା ମୁଖ ଦେଖିଲେ ଦୋଷ ଲାଗଇ ବିଶେଷ । ଖଣା କହେ ମୋର ବାକ୍ୟ ଅନ୍ୟଥା ନୋହିବ । ମହାପାପୀ ତା'ର ମୁଖ ନ ଦେଖିବ । ୧୦ ।

## ଧାନ୍ୟ ରୋପଣ ସ୍ଥାନ ନିର୍ଣ୍ଣୟ

ଡାକ କହି ଖନା କହେ, ବୈତ୍ରେ ଧାନ ପାନ ଗୁଇଏ ।୧୧।
ଡାକକର ଖନା କହୁଅଛୁ ବରଷରେ । ଧାନ୍ୟ ହୁଏ ସ୍ୱର୍ଣ୍ଣବରଣ ଯୁକ୍ତି ସ୍ଥାନରେ ଗୁପ୍ତା ଯୁକ୍ତ ସ୍ଥାନରେ ପାନ ହୁଏ ବିଶେଷ । ଶୁଣ ଚଷା ଭାଇମାନେ ମୋର ଉପଦେଶ ।୧୧।

ଏକ ମାର୍ଗଶିରେ ଧାନ । ତିନ ଶ୍ରାବଣରେ ପାନ ।୧୨।
ଧାନ୍ୟ ଫଳ ଫଳପାରେ ଏକ ମାର୍ଗଶିରେ । ତିନ ଶ୍ରାବଣରେ ଯାଇଁ ପାନ ଭଲ ଫଳେ ।। ଧାନ ପାନ ମଧ୍ୟେ ଏହି ପ୍ରଭେଦ ଅଟଇ । ଧାଏ ଶୀଘ୍ର ଧାଏ ଡେରି ବୁଝିବ ହେ ଭାଇ ।୧୩।

## ଧାନ୍ୟ ରୋପଣ ବିଧି

ହୋଲ ପଖାଳ ନୋଟା ଗୋଟି, ଲକ୍ଷ୍ମୀ ବୋଲନ୍ତି ମୁଁ ସେଇଠି ଅଛି । ଫାଙ୍କ ଫାଙ୍କ କରି ଧାନ୍ୟ ରୋପଣ କରିବ । ଗଛମୋଟ ହୋଇ ସେଥି ବିଶେଷ ଫଳିବ । ଲକ୍ଷ୍ମୀ କହୁଛନ୍ତି ମୁହିଁ ରହେ ସେହି ସ୍ଥାନେ । ଏହି ନିୟମରେ ଚଳ ଚଷାଭାଇ ମାନେ ! ଅବଶ୍ୟ କହୁଛ ଧାନ ଲଭିଣ ନିଜର ମହାନନ୍ଦେ ମଣ୍ଡୁରେ ରହିବ ନିରନ୍ତର । ଅଙ୍ଗରୁ ଦାରିଦ୍ର୍ୟ ବ୍ୟାଧିମାନ ଦୂରହୋଇ ! କି ଅଦ୍ଭୁତ କଥା, ଲକ୍ଷ୍ମୀ ବିରାଜିବେ ଯହିଁ ।

## ଧାନ୍ୟଚ୍ଛେଦନ କାଳ ନିରୂପଣ

ମାର୍ଗଶିରେ ପୌଷ୍ଟି, ପୌଷେ ଛଅଟି, ମାଘରେ ନଡ଼ା, ଫଗୁଣେ
ପାଇବେ ଖଡ଼ା ।୧୪।
ମାର୍ଗଶିର ମାସରେ କାଟିବ ଯେବେ ଧାନ । ଅମଳ କଲେ ପାଇବ ଷୋଳପଣ ଜାଣ । ପୌଷରୁ କାଟିଲେ ଦଶପଣ ଉଣା ହେବ । ଛଅ ପଣ ମାଘ ଚଷାଭାଇଙ୍କ ମିଳିବ । ଧାନ୍ୟ ନ ମିଳିବ ମାଘ ମାସରେ

କାଟିଲେ । କେବଳ ନଡ଼ାପାଳ ଅବାସ୍ତୁ ହେବ ଭଲେ ।। ଫାଲ୍-
ଗୁନରେ ଧାନ୍ୟ ନଡ଼ା କିଛୁ ନ ମିଳିବ । ଖନାର ବଚନ ଏହା
ଅନ୍ୟଥା ନୋହିବ । ୧୪ ।

ଖୋଳେ ତିରିଣ ଫୁଲେ ବଂଶ, ଘୋଡ଼ାମୁଖା ହେଲେ ତେର ହରସ ।
ବୁଢ଼ି ସୁଢ଼ି ଚଷା କାଟିଲେ ଶସ୍ୟ, ତନ୍ଧିରୁ ଗୋଟିଏ ନ ହୁଏ ନାଶ ।।

ଧାନ୍ୟ ଖୋଳ ହେବାଠାରୁ ତିରିଣ ଦିନରେ । ଛେଦନ କରିବ
ଧାନ୍ୟ ହରଷ ମନରେ । ଫୁଲ ଜନ୍ମ ହେବା ଦେଖି ବଂଶଦିନ ଗଣି ।
ମୁଖ ନୁଆଇଁବା ଠାରୁ ତେରଦିନ ଗଣି । ଏହା ବୁଝି ଯେଉଁ ଚଷା
ଭାଇ କାଟେ ଧାନ । ତନ୍ଧିରୁ ଗୋଟିଏ ଊଣା ନ ହୁଅଇ ଜାଣ ।୧୫।

ଶିଷା ଦେଖିଣ ବଂଶଦିନେ, କାଟିବ ମୋଡ଼ିବ ଦଶଦିନେ । ୧୬ ।

ଧାନଶିଷା ବାହାରିବାଠାରୁ ବଂଶଦିନେ ଛେଦନ କରିବ ତାକୁ
ମୂଳରୁ ଯତନେ ।। ଦଶଦିନ ପାକେ ତାକୁ ଗଦାରେ ମାଡ଼ିବ । ତହୁଁ
ତାକୁ କାଢ଼ି ବେଗେ ଗମନ କରନ୍ତୁ ।। ଏମନ୍ତ ଭାବରେ ଏକଗୋଟି
ନୁହେଁ ନଷ୍ଟ । ଚଷା ଭାଇ ହରଣ ହୁଏ ସବୁ କଷ୍ଟ । ୧୬ ।

ହରସେ ଝଡ଼ ସ୍ୱଚ୍ଛେଜଳ, ହମ୍ଭଦିନ ବଢ଼େ ଧାନର ବଳ ।୧୭।

ଯେଉଁ ବର୍ଷ ବର୍ଷାକାଳେ ହରସରେ ଝଡ଼ । ରାତିରେ ବର୍ଷା ହୁଅଇ
ମୁଷଳର ଧାର ।। ସେହି ବର୍ଷ ଧାନ୍ୟ ଅଧିକ ଫଳଇ ବହୁତ । ଚଷା
ଭାଇମାନେ ଶୁଣି ହୋଇ ହରଷିତ । ୧୭ ।

କାନ୍ଧ ଆଗେ ଆଳୀ, ଗୁଞ୍ଜ ଛେଦେ ଶାଳି
ତହିଁ ଯହିଁ ଫଳ ନ ଫଳେ, ଖନା ବୋଲେ ଦେବୁ ଗାଳି । ୧୮ ।

ଅଢ଼ବନ୍ଧ ତେଇ କ୍ଷେତରେ ଜଳ ରଖିବ । ଶାଳିଧାନ୍ୟ ନେଇ
ଏଥି ମଧ୍ୟରେ ରୋପିବ ତଥାର ଫଳଇ ଧାନ୍ୟ ଆଶ୍ଚର୍ଯ୍ୟ ଭାବରେ ।
ମିଥ୍ୟା ହେଲେ ଗାଳିଦେବ ବଚନ ବଧୂରେ । ୧୮ ।

ଆଉଶ ଧାନର ବୃଷ, ଲଗେ ତିନମାସ । ୧୯ ।

ଆଉଶ ଧାନ୍ୟ ବଆଳ ଧାନକୁ ଯେ କହ । ତିନମାସ ଠାରେ ଅମଳକୁ ସେ ଆସଇ ! ଆଉ ସବୁ ଧାନ୍ୟ ରୋପଣର ଛଅମାସେ । ଶେଷ ହୁଏ ବୋଲି ମିହିରଙ୍କ ଜାଣ୍ଯ ଖ୍ଯଷେ । ୧୯ ।

## ପାନ ଲଗାଇବା ମନ୍ତ୍ର

ପାନ ରୋପିଲେ ଶ୍ରାବଣେ, ଲଭ ହୁଏ ଦ୍ୱିଗୁଣେ ।
ଖାଇଲେ ବାନ୍ଧଲେ ନ ହୁଏ ଶେଷ,
ଖନା ବୋଲେ ଘେନ ଉପଦେଶ ।୨୦।

ପାନ ରୋପଣ କରଲେ ଶ୍ରାବଣ ମାସରେ । ଚର୍ଷିରେ ଲଭ ହୁଅଇ ଦ୍ୱିଗୁଣ ପ୍ରକାରେ । ଖାଇଲେ ବୋହ୍ଲେ କେବେ ଶେଷ ନ ହୁଅଇ । ଖନା ବୋଲେ ଏ ବଚନ ମାନ ଚଳ ଭ୍ରଇ । ୨୦ ।

ଆଉଶରେ ଭୂଇଁ ବେଳେ, ପାଟ ଜମି ଭଲ ମଟାଳେ ।୨୧।

ବଆଳ ଜମି ବାଲିଆ ଜମିରେ ଉତ୍ତମ । ମଟାଳ ଭୂମିରେ ଭଲ ହୁଏ ବଡ଼ ଧାନ୍ୟ ॥ ପାଟ ଜମି କହ ଯହିଁ ହୁଏ ଜନ୍ମସ୍ଥିତ । ଶାରଦ ଧାନ ଚର୍ଷିରେ ଅଟଇ ପ୍ରଶସ୍ତ । ୨୧ ।

ବୈଶାଖ ପ୍ରଥମ ଦିନରେ ବୃଷ୍ଟି, ଆଉଶ ଧାନ୍ୟରେ ହୁଏ ସୃଷ୍ଟି ।୨୨

ବୈଶାଖ ମାସ ପ୍ରଥମ ଦିନରେ ବର୍ଷିଲେ, । ବଆଳ ଧାନ୍ୟ ବହୁତ ହୁଅଇ ସଂସାରେ । ଅଭାବ ବେଳକୁ ଏହୁ ଭରସା ହୋଇବ । ପ୍ରାଣୀମାନଙ୍କର ଦୁଃଖ କଷ୍ଟ ନିମଣିବ ।୨୨ ।

## ଆଳୁ ଗଛ ରୋପଣ ନିର୍ଣ୍ଣୟ

ଆଳୁ ରୋପିଲେ ବାଂଶବନେ, ବହୁତ ଫଳେ ଅଳ୍ପ ଦିନେ ।୨୩।

ବାଂଶବନ ନିକଟରେ ଆମ୍ର ଯେ ରୋପିବ । ଅଳ୍ପ ଦିବସରେ ବହୁ ଫଳ ଯେ ଫଳିବ । ସେ ଦେଖି ସନ୍ତୋଷ ହେବ ମାନବଙ୍କ ମନ । ଆନନ୍ଦ ଭାବରେ ଲକ୍ଷ୍ମୀ ହୁଅନ୍ତି ପ୍ରସନ୍ନ । ୨୩ ।

ଘୁଘୁ'ର ଉଲୂଅ ଗଲ୍ କୁଣ୍ଡରେ ରୋପିବା ପ୍ରାଣୀକ ଧାନାଢ୍ୟ କରେ
ଲକ୍ଷ୍ମୀ ତାହାର ବାସେ, ଅଚଳ ଥାନ୍ତି ହରଷେ । ୨୪ ।

ଘୁଘୁ ସ୍ଥାନ ଦେଖି ଯେବେ ଉଲୂଅ ରୋପିବ । ବହୁତ ଫଳ ତହିଁରୁ ନିଶ୍ଚୟ ପାଇବ । ଖାଇଲା ମାତ୍ରକେ ସିନା କୁଣ୍ଡ ଗଲ୍ କରେ ଜାନୁ ଲକ୍ଷ୍ମୀ ବସନ୍ତି ତାହାର ଗୃହରେ । ୨୪ ।

ଫାଲ୍‌ଗୁନେ ଯଦ ନରୋପିଛୁ ଉଲ, ଶେଷେ ହୋଇଯିବ ଅନ୍ତଗୋଳ ।

ଫାଲ୍‌ଗୁନ ମାସେ ଉଲୂଅ କରିବ ରୋପଣ । ଅନ୍ୟମାସେ ରୋପିଲେ ହୁଅଇ ଅକାରଣ । ପକ୍ଷୀମାନଙ୍କର ଢ଼ମ୍ପ ପରସ୍ପ ଦଣଇ ଅପୃଶ୍ୟ ଅଟଇ ତାକୁ ନ ଛୁଅନ୍ତି କେହି । ୨୫ ।

ସ୍ଥଳ ଜଳ କୁମୂଡ଼ା ପାଣ୍ଡ, ଲକ୍ଷୀ ବଲେନ ଆମି ଜଥ । ୨୬ ।

କୁଷ୍ମାଣ୍ଡ କି ଅବା ଲାଉ ବୃକ୍ଷ ସ୍ଥଳ ପୂର୍ଣ୍ଣ । ହୋଇପାରେ ଯେବେ ଲକ୍ଷ୍ମୀ ଥାନ୍ତି ସେହିସ୍ଥାନ ।। ତହିଁରୁ ବହୁତ ଲାଭ ନିଶ୍ଚୟ ହୁଅଇ । ଖନାର ବଚନ କେବେ ଅନ୍ୟଥା ନୁହଇ । ୨୬ ।

ଲଠାନ୍ ଭରା ଲାଉ ଶସା, ଖନା ବୋଲେ ଲକ୍ଷ୍ମୀର ବଶା । କାକୁଡ଼ି ଲାଉ ପ୍ରଭୃତି ଯେ କରେ ରୋପଣ । ତହିଁରୁ ବହୁତ ଲାଭ ହୁଅଇଟି ଜାଣ । ଅଚଳା ହୋଇ କମଳା ତା ଗୃହରେ ଥାନ୍ତି । ତେଣେ ମାତ୍ର ଦୁଃଖ ତାକୁ କେବେ ନ ଦିଅନ୍ତି । ୨୭ ।

## ସାରୁଗଛ ରୋପଣ ବିଧି

ନଦୀ କୂଳରେ ସାରୁ ଗଛ, ରୋପନ୍ତେ ତିନହାତ ଉଚ୍ଛ ।
ତା ମୂଳରେ ପାଉଁଶ ଦିଅ, ମନଇଚ୍ଛା ଫଳ ନିଅ । ୨୮ ।

ନଦୀକୂଳେ ସାରୁଗଛ କରିଲେ ରୋପଣ । ତିନହାତ ଉଚ୍ଛ ସେହୁ ହୋଇବ ପ୍ରମାଣ ॥ ତା ମୂଳରେ କଳା ପାଉଁଶକୁ ଦେଲେ ନେଇ । ଫଳ ଫଳିବ ବହୁତ ଜାଣ ଚଷାଭାଇ । ୨୮ ।

## କାଇଗଣ ରୋପଣ ନିର୍ଣ୍ଣୟ

ଖନା ବୋଲେ ବସନ୍ତ ପୁଅ, ଦଶମାସରେ କାଇଗଣ ରୁଅ ।
ଚଇତ ବୈଶାଖ ଦେଇ ବାଦ, ତର୍ଣ୍ଣି ମାର୍ଣ୍ଣି କଣ୍ଟୁ ବଷାବ ।
ଧରିଲେ ପୋକ ଦେବ ଗୁଇ, ଏହାଠାରୁ ବଳ ଉପାୟ ନାହିଁ ।
ମାଟି ଶୁଖିଗଲେ ଢ଼ାଳିବ ଜଳ, ସକଳ ମାସରେ ଫଳଇ ଫଳ ॥

ଚୈତ୍ର ବୈଶାଖ ଦେନି ମାସକୁ ଛାଡିଣ । ଦଶମାସ କାଇଗଣ କରିବ ରୋପଣ । ପୋକ ଧରିଲେ ପାଉଁଶ ପକାଇ ଦେଇ । ମାଟି ଶୁଷ୍କ ହୋଇଗଲେ ଜଳଦେବ ତହିଁ ॥ ସବୁ ମାସରେ ଅସଂଖ୍ୟ ଫଳ ହେବ ଜାତ । ମିହିରଙ୍କୁ ଡ଼ାକି ଖନା କହଇ ଏମନ୍ତ । ୧୯ ।

## ପୋଟଳ ରୋପଣ ବିଧି

ପଟୋଳ ରୋପିଲେ ଫଗୁଣେ, ଫଳ ଫଳଇ ଦୁଇ ଗୁଣେ । ୩୦ ।

ପଟୋଳ ରୋପଣ କଲେ ଫାଲଗୁନ ମାସରେ । ଦ୍ୱିଗୁଣେ ଫଳଇ ଦେଖ ଶାସ୍ତ୍ର ଅନୁସାରେ ॥ ତହିଁରୁ ବହୁତ ଲାଭ ହୁଅଇ ନିଶ୍ଚିତ । କମଳା ହୁଅନ୍ତି ତାର ଘରେ ଉପସ୍ଥିତ । ୩୦ ।

ମନ ଦେଇ ଶୁଣ ଚଷାର ବେଟା; ମାଟିର ମଧ୍ୟେ ବାଲି ଯେଟା
ତହିଁରେ ଯେବେ ରୋପିବୁ ପଟୋଳ,
ତେବେ ତୋହର ଆଶା ହେବ ସଫଳ । ୩୧ ।

ଚଷାଭାଇମାନେ ମନଦେଇ ଶୁଣ ଏବେ । ବାଲିମିଶା ମାଟିପଡ଼ି ରହିଥିବ ଯେବେ ।। ବଳବାନ ବ୍ୟକ୍ତି ପଞ୍ଚମାଟିମାନ ହୋଇ । ତହିଁରେ ଯେବେ ପଟୋଳ ଲଗାଇବ ନେଇ । ବହୁତ ଫଳ ଫଳଇ ତହିଁରେ ପ୍ରମାଣ । ସେ ଫଳ ବିକ୍ରିର ଧନ ମିଳିବ ଯେ ପୁଣ । କାମନା ପୂର୍ଣ୍ଣ ନିଶ୍ଚୟ ହେବ ଯେତେବେଳେ । ଚଷାପୁଅ ହିତ ପାଇଁ ଖନା କହେ ବଳେ । ୩୧ ।

## କଦଳୀ ରୋପଣ ନିୟମ

ସାତ ହାତ ଛନ ବଢାଟେ, କଦଳୀ ଲଗାଅ ମାତା ପୁତେ ।
ତହିଁରୁ କେବେ ନକାଟ ପତ୍ର, ନିଶ୍ଚୟ ମିଳିବ ଅନ୍ନ ବସ୍ତ୍ର ।୩୨।

ତିନ ହସ୍ତ ପ୍ରମାଣେ ଗର୍ତ୍ତକୁ ଖୋଳିବ । ସାତହାତ ଅନ୍ତରରେ କଦଳୀ ରୋପିବ । ପୁଅ ଲଗାଇଣ ଏକା ତାକୁ ଆଣିଥିବ । ସେ ଗର୍ତ୍ତ ମଧ୍ୟରେ ତାକୁ ଯତନେ ପୋତିବ । ଖଣ୍ଡିଏ ପତ୍ର ତହିଁରୁ ନ କାଟିବ ଯେବେ । ଅନ୍ନ ବସ୍ତ୍ର ସୁଖ ହୋଇ ରହିବଟି ତେବେ । ୩୨ ।

ଯେବେ ରୋପିବ ଫଗୁଣେ କଳା, ତେବେ ହୁଏ ମାସ ସଫଳା । ୩୩।

ଫାଲଗୁନ ମାସରେ ଯେବେ କଦଳୀ ରୋପିବ । ପ୍ରତିମାସେ ରମ୍ଭା ଫଳ ପରାମତ ହେବ । ଧନ ପୂର୍ଣ୍ଣ ହୋଇବ ଦୁଃଖ ହୋଇ ଯିବ ଦୂର । ଲକ୍ଷ୍ମୀ ବସିଜନ୍ତ ବସି ତାହାର ମନ୍ଦିର ।୩୩।

ଡାକ ପୁଅ କହେ ସବଣ, କଦଳୀ ଲଗା ଆଷାଢ଼ ଶ୍ରାବଣ
ତିନଶ ଷାଠିଏ କଦଳୀ ଗୁଚ୍ଛ ଘରେ ଯାଇ ସୁଖେ ଶୁଅ ।
ଗଛରୁ ପତ୍ର ନ କାଟ ଭାଇ, ଅନ୍ନ ବସ୍ତ୍ରେ ଥିବୁ ସୁଖୀ ହୋଇ ।

ତିନଶ ଷାଠିଏ ବୁଦା କଦଳୀର ଗଛ । ଆଷାଢ଼ ଶ୍ରାବଣ ମାସେ ରୋପିବ ପ୍ରତ୍ୟକ୍ଷ । ପତ୍ର ଖଣ୍ଡିଏ କାଟିବ ନାହିଁ ସେ ଗଛରୁ ନିଶ୍ଚୟ

ବହୁତ ଲାଭ ହୋଇବ ତହିଁରୁ । ଅନ୍ନ ବସ୍ତ୍ର ଅଭାବ ଯେ କେବେହେଁ ନ ଘଟିବ । ଧନ ପୂର୍ଣ୍ଣ ହେଲେ ସଦା ଆନନ୍ଦ ରହିବ । ୪୩ ।

ଫାଲଗୁନେ ଏଣ୍ଡି, ପୋଚ କାଟି,
ଲାଗିଯିବ ଗଛକୁ ଗଛ, ଖନା ବଚନ ନୁହେଁ ମିଛ । ୩୫ ।

କଦଳୀ ଗଛ ମୂଳକୁ ଫାଲଗୁନ ମାସରେ । ଅଳ୍ପ ଖୋଳି ଛେଦ ଦେବ ଯତନପ୍ରକାରରେ ॥ ତାହା ହେଲେ ସବୁଗଛ ଲଗାଲଗି ହୋଇ ବଡ଼ ବଡ଼ କାନ୍ଦିମାନ ତହିଁରେ ଫଳଇ ॥ ତହିଁରୁ ବହୁତ ଲାଭ ହୁଅଇ ନିଶ୍ଚିତ । କେତେବେଳେ ଦୁଃଖକଷ୍ଟ ନ ହୋଇବ ଜାତ ॥ କଦଳୀ ଲଗାଇ ଭାଦ୍ରବମାସେ, ନାଶ ହେଲା ଲଙ୍କପତି ସବଂଶେ । ଉତ୍ତର ବାଆ ବଡ଼ ମନ୍ଦ, କେହି ତାର ନ ଜାଣେ ଛନ୍ଦ । ୩୬ ।

ଭାଦ୍ରବମାସେ କଦଳୀ ଲଗାଇ ରାବଣ । ସବଂଶେ ବିନାଶ ସେହି ହୋଇଲା ପ୍ରମାଣ ॥ ତେଣୁ ସେ ମାସରେ କଦଳୀ କ ନ ରୋପିବ । ରୋପିଲେ ନିଶ୍ଚୟ ପରିଶ୍ରମ ବୃଥା ହେବ ॥ ଉତ୍ତର ବାୟୁ ସେ ମାସରେ ସିନା ଭଲ । କଦଳୀ ବୃକ୍ଷକୁ ପୁଣି କରେ ନାରଖାର ॥ କେହି ତାର ଛନ୍ଦ ଭେଦ ଜାଣି ନ ପାରନ୍ତି । ନବୁଝି ନ ସୁଝି ପ୍ରାଣୀ କ୍ଷତିଗ୍ରସ୍ତ ହୋନ୍ତି । ୩୬ ।

ଆଠହାତ ଅନ୍ତେ କଦଳୀ, ରୋପିବ ଯତନେ ପାଣିକୁ ଢାଳି ।
ପତର ନ କାଟି ରଖିବ ମୂଢ଼ ତହିଁରେ ଦେଖିବ କେମନ୍ତ ଫଳି ।

କଦଳୀ ରୋପିବ ଆଠହାତ ଅନ୍ତରରେ । ଯତନେ ପାଣି ଦେବ ତାହାର ମୂଳରେ । ପତର ଖଣ୍ଡିଏ ଚତୁ କେବେ ନ କାଟିବ ମୂଳ ସଫାକରି ମଞ୍ଜମାନ କରିଦେବ ॥ ଦେଖିବ କେମନ୍ତେ ନ ଫଳବତି କଦଳୀ । ଖନା କହେ ଚଷାଭାଇ ତହେଁ ଥାଅ ଭଲ ।୩୭।

ସିଂହ ମୀନ ବର୍ଜ୍ଜେ, କଦଳୀ ଖାଅ ଆର୍ଯ୍ୟା । ୩୮ ।

କଦଳୀ ଲକ୍ଷଣ ବିଧି କହୁବା ହେ ଶୁଣ । ଶ୍ରାବଣ ଚଇତ୍ର ବୈଶାଖ ମାସକୁ ତେଜଣ ।। ସୁଜ୍ଞଜନମାନେ ଏହା ଅନୁସରଣ କରିବେ । କଦଳୀ ଲଗିବ ଆଉ ସବୁ ମାସେ ନିଶ୍ଚୟ । ୩୮ ।

ଆଗେ ପୁତ୍ରେ କଲ ବର ବଗିଚ୍ଚ ଫଳ ।
ଶୁଣରେ ବାଣ ଚଣ୍ଡାଳ ପୁଅ, ତମେ ନାରିକେଳ ଗୁବାକୁ ରୁଅ ।
ନଡ଼ିଆ ବା'ର ଗୁବାକ ଆଠ, ଏପରି ମାପି ଘର ବାଟ । ୩୯ ।

ବଗିଚ୍ଚ କରିବାପାଇଁ ଇଚ୍ଛା କର ଯେବେ । ପ୍ରଥମରେ କଦଳୀ ଲଗାଇ ଦେବ ତେବେ ।। ତା ପରେ ନଡ଼ିଆ ସେହି ସ୍ଥାନରେ ରୋପିବ । କିଛୁଦିନ ପରେ ପୁଣି ଗୁଆ ଲଗାଇବ ।। ନଡ଼ିଆ ରୋପିବ ବାରହାତ ଅନ୍ତରରେ । ଗୁଆ ଲଗାଇବ ଆଠହାତ ଯତ୍ନରେ । ଏପରି ନିୟମ ସ୍ଥିର ଚଳିଲେ ଅବଶ୍ୟ । ଉପବନ ମଧ୍ୟ ଫଳ ଦୁଅଇ ଅବଶେଷ ।

## ତାଳ ଲଗାଇବା ନିୟମ

ଏକ ପୁରୁଷେ ଲଗା ତାଳ, ଦୁଇ ପୁରୁଷେ ତାହା ଖାଳ ।
ତା ପର ପୁରୁଷେ ଖାଇବ ଫଳ, ବୃଷ୍ଟି ରହିଥା ତିନକାଳ । ୪୦ ।

ତାଳଗଛ ରୋପଣ କରିବ ଯେଉଁ ଜନ । ସେ ପୁରୁଷେ ଫଳ ନ ପାଇବ କଦାଚନ । ତାପର ପୁରୁଷେ ପ୍ରତିପାଳନ କରିବେ । ସେ ମଧ୍ୟ ତାହାର ଫଳଲାଭ ନ ପାଇବେ ।। ତାପର ପୁରୁଷେ ଯାଇଁ ହେବ ଫଳ ପ୍ରାପ୍ତ । ଏଏ ତିନକାଳ ବୃଷ୍ଟି ବସିବ ନିଶ୍ଚିତ । ୪୦ ।

ବାର ବରଷରେ ଫଳଇ ତାଳ,
ଯେବେ ନ ଲାଗିବ ଗୋମୂତ୍ର ଜଳ । ୪୧ ।

ତାଳଗଛ ଲଗାଇବ ଅଣ ଯତ୍ନ ଘରେ । ଗୋ ମୂଖ ତଣ୍ଡି ଯେତେ ନ ଲାଗିବ ତେବେ ॥ ତେବେ ବାର ବରଷରେ ନଷ୍ଟପ୍ରୁ ଫଳଇ । ଖନାର ବଚନ ଏହା ଅନ୍ୟଥା ନୁହଇ । ୪୧ ।

ଗୃହ ପାଶେ ଥିଲେ ତାଳ, ଅଳ୍ପ ଧନ ପୁରଇ କାଳ ।
ଗୃଧ୍ର ପକ୍ଷୀ ବସି ତା ପରେ, ନାନା ବ୍ୟାଧି ଜାତକରେ । ୪୨ ।

ଗୃହ ନିକଟରେ ଯେବେ ତାଳଗଛ ସ୍ଥିତ । ତାହାକୁ ଛେଦନ ବେଗେ କର ସୁବୁଦ୍ଧିବନ୍ତ । ନୋହିଲେ ତା ପରେ ଗୃଧ୍ର ପକ୍ଷୀ ଯେ ବସିବ । ତେଣୁ ନାନାରୋଗ ଆସି ଘରେ ପ୍ରବେଶିବ ॥ ଖନା ବାକ୍ୟ ମନା ଏହୁ ଅଟଇ ଚିରକାଳ । ଯେ ପ୍ରାଣୀ ନ ମାନେ ତାର ପୁରେ ଅଳ୍ପ କାଳ । ୪୨ ।

## ଆମ୍ବ ଓ ପଣସ ଗଛ ରୋପଣ ବିଧି

କୋଡ଼ିଏ ହାତ କରି ଫାଙ୍କ, ଆମ୍ବ ପଣସ ପୋତ ଦେଖ ।
ଗଛକୁ ଗଛ ଯେବେ ଲାଗଇ, ତେବେ ଫଳ ଫଳିବ ନାହିଁ । ୪୩ ।

ମଝିରେ କୋଡ଼ିଏ ହାତ ଯାଏ ଫାଙ୍କ ରଖି । ଆମ୍ବ ପଣସ ଗଛକୁ ଲଗାଇ ନଦେଖି । ଗଛକୁ ଗଛ ଯେବେ ନ ଲାଗି ଯାଏ ହେଲେ । ତେବେ ସେ ବୃକ୍ଷ କଦାପି ଗୋଟିଏ ନ ଫଳେ । ୪୩ ।

ମାର୍ଗଶିରେ ଯେବେ ନ ହୁଏ ବୃଷ୍ଟି, ଜାଣିବ ନହେବ ପଣସ ସୃଷ୍ଟି ।
ବରଷା ନ ହୁଏ ଯେବେ ମାର୍ଗଶିର ମାସେ । ନ ଫଳିବ ପଣସ ଜାଣିବ ଅବଶେଷେ । ଖୋଜିଲେ ଲୋଡ଼ିଲେ କାହିଁ ଗୋଟିଏ ନ ମିଳେ । ଖନା କହନ୍ତି ଏହା ମିହିର ଆଗରେ । ୪୪ ।

## ନଡ଼ିଆ ଗଛ ଫଳିବା ଉପାୟ

ନଡ଼ିଆ ମୂଳେ ଲବଣ ମାଟି, ଶୀଘ୍ର ଶୀଘ୍ର ଧରେ ଗୁଟି । ୪୫ ।
ନଡ଼ିଆ ମୂଳରେ ଲୁଣମାଟି ଦେଲେ । ବହୁତ ଫଳଇ ଫଳ

ଖନା ଏହା କହୋଲେ ॥ ଗେଟିଏ ମାସ ଚର୍ଚ୍ଚିରୁ ନଷ୍ଟ ନ ହୁଅଇ ।
ଏହି କଥା ଗୋଟି ମନେ ରଖିଥାଅ ଭାଇ ।୪୫।

ଖନା ବୋଲେ ଶୁଣିଯାଅ, ନଡ଼ିଆ ମୂଳରେ ଚଟା ଦଅ ।
ଗଛହେବ ବହୁତ ମୋଟା, ଶୀଘ୍ର ଶୀଘ୍ର ଧରେ ଗୋଟା ॥

ଖନା କହୁଅଛୁ ଡାକ ଶୁଣ ଚଷାଭାଇ । ନଡ଼ିଆ ଗଛମୂଳେ ଅଗାଡ଼ ଦଅ ଦେଇ ॥ ଗଛ ସବଳ ସତେଜ ହୋଇଣ ଚଳିଲ । ବଡ଼ ବଡ଼ କାନ୍ଧ ହୋଇବଟି ଫଳ । ୪୬ ।

ନାରିକେଳ ଗଛର ଗୁଳ, ଯେମନ୍ତେ ନ ପଡ଼ିବ ହର ଭାଇ ।
ସଫା କରିବୁ ତାର ମୂଳ, ଖନା କହେ ଫଳିବ ଫଳ । ୪୭ ।

ନାରିକେଳ ଗଛରେ ଅନ୍ୟ ଗଛର ଗୁଳ । ଯେପରି ନ ପଡ଼େ ସାବଧାନ ଥିବ ହୋଇ । ତା ମୂଳରେ ମଳ ଅଂଶ କିଛୁ ନ ରଖିବ ନିତପ୍ରତି ପରିଷ୍କାର କରି ଦେଉଥିବ । ବହୁତ ଫଳ ଫଳଇ ସେ ବୃକ୍ଷରେ ପୁଣି । ଖନା କହେ ଚଷା ଭାଇମାନେ ଥାଅ ଜାଣି । ୪୭ ।
ଗୁଆ ନାରିକେଳ ସ୍ୱଚ୍ଛ ରୁଅ । ଆମ୍ବ କ୍ଷୁଦ୍ର ପଣସ ଶ୍ରେହୁଅ । ୪୮ ।
ଗୁବାକ ନଡ଼ିଆ ବୃକ୍ଷ କ୍ଷୁଦ୍ର ଥିବା କାଳେ । ପୁଷ୍ଟ ହୁଏ ବାରମ୍ବାର ଉତ୍ପାଟନ କଲେ । ଆମ୍ବକୁ ସେପରି କଲେ ଫଳ ହୁଏ ସାନ ।
ପଣସକୁ କଲେ ହୁଏ ବିନାଶ ବିଧାନ । ୪୯ ।

ଶୁଣରେ ବାପ ଚଷାର ପୁଅ, ସୁପାରି ବାଗନେ ମନ୍ଦାର ରୁଅ ।
ମନ୍ଦାର ପତ୍ର ପଡ଼ି ତା ମୂଳେ, ଶୀଘ୍ର ଶୀଘ୍ର ଫଳ ଫଳେ ॥

ଶୁଣ ଚଷା ପୁଅମାନେ ମନ ଦରଷରେ । ସୁପାରି ବୃକ୍ଷେ ରୋପଣ କରି ଯତନରେ । ତା ମଧ୍ୟେ ମନ୍ଦାର ଗଛ ଲଗାଇବ ନେଇ । ସେପତ୍ର ଝଡ଼ି ତା ମୂଳେ ଯେବେ ପଡ଼େ ଯାଇ ॥ ତେବେ ଅତି ବ୍ୟଗ୍ରେ ଗୁଆ ଫଳଇ ବହୁତ । ନୋହିଲେ ଶୂନ୍ୟକୁ ସ୍ପର୍ଶି ଥିବଟି ନିଶ୍ଚିତ ।୫୦।

ଗୁବାକେ ଗୋମୟ୍ ବାଉଁଶେ ମାଟି, ଅଫଳା ନଡ଼ିଆଡେରକୁ କାଟି ।
ଉଲୁଅ ଖତ ସାରୁରେ ଗୁଣ, ଏହିରୂପେ କୃଷି କର ହେ ଖନ ।୫୦।

ଗୁବାକ ଗଛ ମୂଳରେ ଗୋମୟକୁ ଦେବ । ଅଫଳନ୍ତ ନଡ଼ିଆର ଡେରକୁ କାଟିବ । ମାଟି ପିନ୍ଧାଇବ ଯେଉ ବାଉଁଶ ମୂଳରେ ଉଲୁଅ ମୂଳରେ ଖତ ଦେବ ଯତନରେ । ସାରୁ ଗଛ ମୂଳେ ପାଉଁଶକୁ ଦେବ ନେଇ ଅଧିକେ । ଫଳବ ଅଶେଷ କହନ୍ତି ବୁଝାଇ । ୫୦ ।

ବାଡାର ନଡଆ କୃପଣର ବଣ, କମ ନ ହୋଇ ବଢ଼େ ବାରମାସ ।

ଗଛରେ ଯେବେ ନଡ଼ିଆ ଫଳୁଥିବ ଜାଣ । ସବୁ ଭୋଜୁଥିବ ହରଷିତ କର ମନ । ତେବେ ବିଶେଷ ଭାବରେ ସେ ବୃକ୍ଷ ଫଳଇ । ବାଉଁଶକୁ ନ ଛେଦିଲେ ବର୍ଦ୍ଧିତ ହୁଅଇ । ୫୧ ।

## ବାଉଁଶ ଗଛ ବୃଦ୍ଧି ହେବାର ଉପାୟ

ଶୁଣରେ ବାପୁ ଚଷୂର ବେଟା, ବାଂଶ ମୂଳେ ଦିଅ ଧାନର ଛଟା ।
ପଲରେ ଛଟା ବାଂଶର ମୂଳେ, କେମନ୍ତ ବଢ଼ିବ ଦେଖ ଫଳରେ ।

ଧାନର ଅଗାଡ଼ ପୁଣି ଛୁଣ୍ଡା ପାଳ ନେଇ । ବାଉଁଶ ଗଛ ମୂଳରେ ଯେବେ ଦେବ ଖନ । ବାଂଶବନ ବୃଦ୍ଧି ହୁଏ ଆଶ୍ଚର୍ଯ୍ୟ ଭାବରେ । କେତେ ବଢ଼ଇ ଦେଖ ଏ କାର୍ଯ୍ୟଫଳରେ । ୫୨ ।

ଫାଲଗୁନରେ ଅଗ୍ନି ଚଇତେ ମାଟି, ବାଉଁଶ କହେ ମୁଁ ଖାଏଁ ଉଠି
ବାଂଶ ଗଛ ମୂଳେ ପତ୍ର ପଡ଼ିଥିବ ଯେତେ । ଅଗ୍ନି ଲଗାଇବ ଫାଲଗୁନମାସରେ ସୁଚିନ୍ତେ ।। ପୋଡ଼ି ଭସ୍ମକର ସବୁ ପାଉଁଶ କରିବ ଗୋଟିଏ ମାତ୍ର ଭୂମିରେ ପତ୍ର ନ ରଖିବ । ଚଇତ୍ର ମାସରେ ପୁଣି ମାଟି ପିନ୍ଧାଇବ । ଦେଖିବ ବାଉଁଶ କେଉଁ ପ୍ରକାରେ ବଢ଼ିବ ।୫୩।

## ଷୋଢ଼ଷ ବପନ ସମୟ

ଖନା କହଇ ଚଷାର ପୁଅ, ଶରତ ଶେଷରେ ଷୋଢ଼ଷ ରୁଅ ।
ଫଳ ଫଳିବ ଅପ୍ରମିତ, ଖନା କଥାରେ ରଖ ଚିତ୍ତ । ୫୪ ।

ଶରତ କାଳ ଶେଷରେ ବୁଣିବ ଷୋଢ଼ଷ । ଅବଶ୍ୟ ଫଳ ତହିଁରେ ଫଳିବ ବିଶେଷ । ଅନ୍ୟ ଦିନେ ବୁଣିଲେ ଏପରି ଘଟିବ ଖନାର ବଚନ ଏହା ମନେ ରଖିଥିବ । ୫୪ ।

ଷୋଢ଼ଷ ସଙ୍ଗରେ କଳାଇ ମୁଗ, ଏକ ସମୟେ କରିବ ଯୋଗ
ଆନନ୍ଦେ ବୁକେ ବାଦ୍ୟ ବାଅ, ଯଥା ଇଚ୍ଛା ଯାଅ । ୫୫ ।

ଷୋଢ଼ଷ ସାଙ୍ଗରେ ଚରି ମୁଗ ଏକ କରି ।। ଏକ କ୍ଷେତ୍ରେ ବୁଣିଲେ ହୁଅଇ ସମ ସରି । ଏକାକାଳେ ଏକାବେଳେ ତିନ ଶସ୍ୟ ମିଳେ । ବିଶେଷ ଲାଭ ତହିଁରୁ ହୁଏ ଅଳ୍ପକାଳେ । ଆହେ ଚଷାଭାଇ ଏପ୍ରକାରେ କରି ଯତ୍ନ । ହସ୍ତେ ନିଜ ଗୁଣ୍ଡିକ ବଜାଇ ହୁଅ ତୋଷ । ଯେଣେ ଇଚ୍ଛା ତେଣେ ପଡ଼େ ଯାଉଥାଅ ଭାଇ । ଏହି ଉପାୟକୁ ମନୁ ଭୁଲିଯିବ ନାହିଁ । ୫୬ ।

ଭାଦ୍ରବେ ବୁଡ଼ି; ଆଶ୍ୱିନେ ବୁଡ଼ି, କଳାଇ ସେଇବ କହୁ ନ ବାରି ।।
ଶେଷ ହେବାକୁ ଭାଦ୍ରବ ବୁଡ଼ିଦିନ ଥିବ । ଆଶ୍ୱିନ ମାସରେ ବୁଡ଼ି ଦିନକୁ ଗଣିବ ।। ଏ ମଧ୍ୟରେ ଯେଉଁ ଚରି ରୋପଣ କରଇ । ଅସଂଖ୍ୟ ଫଳ ପ୍ରାପତ ତାହାକୁ ହୁଅଇ ।। ଅନ୍ୟଦିନେ ଏପରି ନ ହୁଅ ଫଳ ଲାଭ । କେବଳ ହୋଇବ ମନ ବଳିବାକୁ କ୍ଷୋଭ । ୫୬ ।

## ତିଳ ବପନ ସମୟ

ଫାଲ୍ଗୁନ ଆଠକୁ ଚୈତ୍ର ଆଠ, ଯେଣ୍ଟୁ ତିଳକୁ ବାଆରେ କାଟ ।।

ଆଠ ଦିନ ଥିବ ଫାଲଗୁନ ହେବାକୁ ଶେଷ । ଆଠ ଦିନ ମଧ୍ୟେ ହୋଇଥିବ ଚୈତ୍ର ମାସ । ଏହି ଷୋଳ ଦିବସରେ ଯେ ତିଳ ବୁଣିବା ବିଶେଷ ଫଳ ତହିଁ ଅବଶ୍ୟ ଲଭିବ । ୫୬ ।

## ସୋରିଷ ଓ କପା ରୋପଣ ବିଧି

ବହଳ ସୋରିଷ ପତଳା ଧାନ, ଲଗା ଲଗା କର କାର୍ପାସ ରୋପ ।
କପା ବଢ଼ଇ ଚଷାଘର, କ୍ଷେତର ଜଳ ଯେହ୍ନେ ନ ଯାଇ । ୫୮ ।

ବହଳ କରି ସୋରିଷ ବୁଣିବ ଯତନେ । ଧାନ ସୋରିଷକୁ ବୁଣ ପତଳା ବିଧାନେ ।। ଏହି ପ୍ରକାରେ କପା କରିବ ବପନ । ଯେହ୍ନେ ତା ମୂଳରେ ଛୁଟା ହୋଇବଟି ପୁଣ ।। କାର୍ପାସ ଚୋଳକ ଅତ ଆନନ୍ଦତ ହୋଇ । ଯେସନେ ଲଗାଅ କପା ମନେ ଖୋଲ ନୋହି । ପାଟକପା ଏକ ସଙ୍ଗେ ଏକଇ ସ୍ଥାନରେ । କଦାପି ରୋପିବ ନାହିଁ କେବଳ ଖାଲରେ ।। କପାଗଛ ମୂଳେ ପାଟଜଳ ପଡ଼େ ଯେବେ । ନଷ୍ଟ ହୋଇଣ କପା ନ ବଢ଼ଇ କେବେ । ୫୮ ।

## ହରିଦ୍ରା ରୋପଣ ସମୟ

ବୈଶାଖ ଜ୍ୟେଷ୍ଠରେ ହରିଦ୍ରା ରୁହ, ପଶାଖେଳ ଆଦ ବାହାରେ ଥୁଅ
ଆଷାଢ଼ ଶ୍ରାବଣେ ପୋଡିବ ମାଟି ଭାଦ୍ର ନଗଡ଼ାରେ କରିବ ଖାଣ୍ଡି ।
ଅନ୍ୟ ମାସରେ ପୋଡିଲେ ପୁଣ, ପୃଥ୍ୱୀ କହେ ଫଳ ନହେବ ଜାଣ

ହରିଦ୍ରା ରୋପିବ ଯେବେ ବୈଶାଖ ଜ୍ୟେଷ୍ଠରେ । ପଶା ଆଦ ଖେଳମାନ ବର୍ଜିଣ ବାଗ୍ରରେ ।। ନିତ୍ୟପ୍ରତି ଦେଖୁଥିବ ସେ କ୍ଷେତ୍ରକୁ ଯାଇଁ । ଘଷ କରିଥିବ ଜଳମୁକ୍ତ ହେବାପାଇଁ ।। ଆଷାଢ଼ ଶ୍ରାବଣ ଭାଦ୍ର ଏହି ତିନମାସେ । ତା ମୂଳକୁ ମାଟି ପିନ୍ଧାଇବ ସୁହରଷେ । ବହୁତ ହରିଦ୍ରା ଫଳ ଫଳିବ ମୂଳରେ । ଏ ସୁଯୋଗ ଛାଡ଼ିବେବ ନାହିଁ କେତେବେଳେ ।। ଅନ୍ୟମାସେ ରୋପିବା କି ଅବା ହେଉ ଯେଣ । କଲେ ନ ଫଳିବ ଫଳ ଏ ଶାସ୍ତ୍ର ବଚନ ।। ପୃଥ୍ୱୀ କହଇ କାହିଁ ତାକୁ ଫଳିବେବ । ଚଷା ଭାଇମାନେ ମନେରଖ ଏହା ଭାବ । ୫୯ ।

## ମୂଳା ଭୂମି ଓ ଆଖୁ ଭୂମି ଶ୍ରେଷ୍ଠ ନିର୍ଣ୍ଣୟ

ମୂଳାର ଭୂମି ବୁଦା ଆଖୁର ଭୂମି ମୂଳା । ୭୦ ।

ମୂଳା ଲଗାଇବା ଭୂମି ବୁଦା ଖର କର । ଏକ ଗୋଟି ଗୋଟି ଯେପ୍ରେ ନ ରହେ ତହିଁରେ ।। ଅତ୍ୟନ୍ତ ନରମ ହେଲେ ମୂଳା ହୁଏ ଭଲ । ବିଶେଷ ଲାଭ ତହିଁରୁ ହୁଏ ତତକାଳ । ଧୂଳିପ୍ରାୟେ କରିମାଟି ଆଖୁ ଲଗାଇବ । ମନ ଇଚ୍ଛା ମତେ ତହୁଁ ଲାଭ ଯେ ପାଇବ । ଏହା ନ କରିଲେ କେବେ ନ ମିଳଇ ଯଶ । ବୃଥାରେ ସକଳ କର୍ମ ହୋଇଯାଏ ନାଶ । ୭୦ ।

## ମୂଳା ଓ ଧୂଆଁପତ୍ର ରୋପଣ ବିଧି

ଖନା ବୋଲେ ଚଷା ଶୁଣ, ଶରତ ଶେଷରେ ମୂଳା ବୁଣ । ଧୂଳି ପରି କର ତମାଖୁ ମାଟି; ରୋପଣ କରିବ ଗୋଟିକ ଗୋଟି ।। ଘନ ଘନ କରି ଯୋଡନା, ପୌଷରୁ ଅଧିକ ରଖନା । ୭୧ ।

ଶରତକାଳ ଶେଷ ହୋଇବା ଦେଖି ଶୁଣି । କଦୁ ସ୍ୱଚ୍ଛେ ମାଟି ଧୂଳିପରି କରିପୁଣି । ମୂଳା ବପନ କରିବ ଗୋଟି ଗୋଟିକରି । ପୁଣି ଅନ୍ୟ ସ୍ଥାନରେ ମାଟିକରି ଏହିପରି ।। ତହିଁରେ ତମାଖୁ ନେଇ ସୁଖେ ଲଗାଇବ । ଗୋଟି ଗୋଟି କରି ଦାଳଦଆ ନ କରିବ । ପୌଷମାସରୁ ଅଧିକ ସମୟ ନରଖି । ବନସ୍ତୁ କରି ସେ ଧନେ ନଷ୍ଟେହୋଇସୁଖୀ ।

## ଲଙ୍କାମରିଚ ରୋପଣ ବିଧି

ଭାଦ୍ରବ ଆଶ୍ୱିନେ ନରୋଇ ଝାଲ, ଯେପ୍ରାଣୀ ଅଳସେ କାଟଇକାଳ ରୋପେକାତିକ ମାର୍ଗଶିର ମାସେ, ପୋକଧରି ଗଛ ମରଇ ଶେଷେ । ଧିକ ତା ବୁଦ୍ଧି ଧିକ ତା ଶ୍ରମ, ଶେଷେ ହୁଏ ସବୁ ଅକାରଣ ।୭୨।

ଭାଦ୍ରବ ଆଶ୍ୱିନମାସେ ଅଳସ ପଣରେ । ଯେଉଁ ପ୍ରାଣୀ ଲଙ୍କା ନ ରୋପଇ ଯତନରେ ।। କାର୍ତ୍ତିକ ମାର୍ଗଶିରରେ ପୁଣି ଦେଇ ମନ ।

କ୍ଷେତରେ ମରିଚ ଗଛ କରଇ ରୋପଣ ॥ ପରିଶ୍ରମଯୋଗ ତାର ଦୁଇ ପ୍ରକାରଣ । ପୋକ ଲାଗି ଗଛମାନ ମରିଯାଏ ଜାଣ ॥ ତେଣୁ ତା ବୃଦ୍ଧି ଶ୍ରମକୁ ଧିକ ଧିକ କହ । ଏଣୁ ଆଳସ୍ୟ ନ କର ଚେତେ-ବେଳେ ରହ । ୭୨ ।

## ଲାଉ ଗଛ ଲଙ୍କାମରିଚ ଗଛର ଉପକାରୀ ଦ୍ରବ୍ୟ ନିର୍ଣ୍ଣୟ

ମାଛର ଜଳେ ଲାଉ ବଢ଼େ, ଧାନ ପଖାଳଜଳେ ଝାଲ ବଢ଼େ । ଲାଉଗଛ ମୂଳେ ଏଥା ମଳା କରିଦେବ । ମାଛଧୁଆ ପାଣି ନେଇ ତହିଁରେ ଢାଳିବ । ଅନୁଦିନ ସେହିଗଛ ହୋଇବ ବର୍ଦ୍ଧିତ । ଫୁଲ ଫଳମାନ ତାର ଦୁଇବ ବହୁତ ॥ ଲଙ୍କା ମରିଚର ଗଛ ମୂଳେ ମନେ କର । ଧନ୍ୟ ସଙ୍ଗି ସଢ଼ିଥିବା ଜଳ ଦେବେ ଢାଳ ॥ ବହୁତ ଫଳ ଫଳଇ ଓଷ୍ଟର୍ଯ୍ୟ ଝାଳରେ । ମିହିରଙ୍କୁ ଡାକ ଖନା କହେ ଏହ୍ରକାରେ॥

## ଗଛର କଲମ ରୋପଣ ସମୟ ନିରୂପଣ

ଶୁଣରେ ମାଳ ବହୁଛୁ ମୂର୍ତ୍ତି, ଶ୍ରାବଣେ କଲମ ରୋପିବ ନେଇ । ଅଳପ ଦିନରେ ପାଇବ ଫଳ, ମନରେ ରଖିଥାଅ ଚିରକାଳ ।୭୪। ଗଛରେ କଲମ ଲଗାଇବା ଶୁଣ ଏବେ । ଶେଷ ହୋଇବ ଆଷାଢ଼ ମାସ ଗଲ ଯେବେ ॥ ଶ୍ରାବଣ ମାସରେ ବହୁ ବୃଷ୍ଟି ହେବାକାଳେ । କଲମ ରୋପିବ ନେଇ ମନ ଆନନ୍ଦରେ ॥ ଅଲ୍ପ ଦିନେ ଫଳ ବହୁ ହୋଇବ ପ୍ରାପତ । ଖନାର ବଚନ ମିଥ୍ୟା ନୁହେଁ କଦାଚିତ । ୭୪ ।

## ମହଣ ସାରୁ ଖସା ଓ ଗଛ ଲଗାଇବାର ପ୍ରଶସ୍ତ ଭୂମି ନିରୂପଣ

କୋବାଳେ ମନ ତଳେ ବୁଲ, ଆଣ୍ଠି ନ କାଟିଲେ ରୋପ ତାଳ । ମାଘରେ କ୍ରୂଷ କୃଷ୍ଣ ଖଳ, ପୁଇରେ ଲାଉ ବେଣୀ ଫଳ ॥ ଢ଼ିପା ଭୂମିରେ ରୋପ ଲଙ୍କା, ମନେ ନ କର କିଛୁ ଶଙ୍କା । ୭୫ ।

ଖୋଦାଳରେ ହାଣି ମାଟି ପେଷଣ କରିବ । ତଣ୍ଟିରେ ନେଇ
ମହଣ ସାରୁ ଲଗାଇବ ।। ତେବେ ଅତ୍ୟଧିକ ଫଳ ହୁଅଇ ମୂଳରେ
ବିଶେଷ ଲାଭ ତଣ୍ଟିରୁ ହେବ ସେକାଳରେ । ଆଶ୍ୱିନ କାର୍ତ୍ତିକ ମାସେ
ଶ୍ୱେତ ତିଳ ବୁଣ । ଭଲ ବୃଷ କଣଥିଲେ ଲାଭହୁଏ ପୁଣ । ମାଘ
ଫାଲଗୁନ ମାସରେ କୃଷ୍ଣତିଳ ନେଇ । ଉତ୍ତମ କର୍ଷିତ ଭୂମି ମଧ୍ୟେ
ବୁଣ ଦେଇ ।। ଦେଖିବ ବହୁତ ଫଳ ପ୍ରାପତ ହୋଇବ । ଖନାର
ବଚନ କେବେ ଅନ୍ୟଥା ନୋହିବ ।। ଲାଉଗଛ ଯେବେ ଶାର୍ଣ୍ଣଶରେ
ଜାତହୋଇ । ବଞ୍ଚିରହିଲେ ବହୁତ ଫଳ ସେ ଫଳଇ । ଲଙ୍କାମରିଚ
ରୋପିଲେ ଡିମ ଭୂମିପରେ । ଅସଂଖ୍ୟ ଫଳଇ ସେହୁ ଅଶ୍ଚର୍ଯ୍ୟ
ଆବରେ ।। ଏକଥା ନୁହଇ ମିଥ୍ୟା କେତେବେଳେ ଜାଣ । ଖନାର
ବଚନ ଏହା ବୁଝିଛନ୍ତି ଘେନ । ୭୫ ।

## ମଟର କଲାଇର ବପନ ବିଧି

ଅଶ୍ୱିନର ଉନବିଂଶ, କାର୍ତ୍ତିକର ଉନବିଂଶ
ଏ ମଧ୍ୟରେ ମଟର କଲାଇ କର ବୃଷ । ୭୬ ।

ମଟର ବପନ କରିବାକୁ ହେଲେ ମନ । ଆଶ୍ୱିନମାସର ଗୁଡ଼
ଉନବିଂଶ ଦିନ ।। କାର୍ତ୍ତିକମାସର ଉନବିଂଶ ଦିନଥାଇ । ଏ ମଧ୍ୟରେ
ମଟର ଲଗାଅ ଚଷାଭାଇ । ବହୁତ ଫଳ ଫଳିବ ଖାଇଲେ ର
ସରେ । ପୂର୍ବକାଳୁ ଲେଖା ହୋଇ ଅଛନ୍ତି ଶାସ୍ତ୍ରରେ । ୭୭ ।

## ମକା ରୋପଣ ସମୟ ନିର୍ଣ୍ଣୟ

ଟଙ୍କା ତରକାରୀ ଥିଲେହିରେ ପୁଅ, ଚଇତ୍ର ମାସରେ ମକା ରୁଅ ।
ଧନବନ୍ତ ହେବାପାଇଁ କଲେ ଯେବେ ମନ । ଚଇତ୍ର ମାସରେ
କର ମକାକୁ ରୋପଣ । ପ୍ରଚୁର ଫଳ ଫଳିବ ବୃହତ୍ ଆକାରେ ।

ଏପରି ଜାଣ ଖାଇଲେ ବୋହିଲେ ନ ସରେ । ଅଳ୍ପ ପରିଶ୍ରମ ବହୁ
ଧନ ଲାଭ ହେବ । ଦୁଃଖ ଦରିଦ୍ର ଅବସ୍ଥା ସବୁ ମେଣ୍ଟିଯିବ ।୬୭।

## ଅଳସୁଆ ଲକ୍ଷଣ

ବଳଦ ଥାଇ ଯେ ନ କରେ ହଳ, ତାର ଦୁଃଖ ଚିରକାଳ ।
ନ ମିଳେ ଅନ୍ନ ଜଳ ବାସ, ଆପଣା ଦୋଷ ହୁଏ ନାଶ । ୬୮ ।
ଯେଉଁ ପ୍ରାଣୀ ନିଜ ବଳଦକୁ ବାନ୍ଧି ରଖି । ସ୍ୱତ ନ କରି କେବଳ
ନାଚ ଗୀତ ଦେଖି ॥ ଅଳସ ଭାବରେ ଦିନ କରଇ ଯାପନ । ତାହାକୁ
ସୁଖ ପ୍ରାପତ ନୁହେଁ କଦାଚନ । ଚିରକାଳ ଦୁଃଖ ଭୋଗ କରଇ
ଅପାର । ଅନ୍ନବସ୍ତ୍ର ନ ମିଳନ୍ତେ ହୁଏ ହରବର ॥ ବାସ୍ଥି ଠାବ ନ
ମିଳଇ ସେ ପ୍ରାଣୀକୁ ଜାଣ । ଆପଣା ଦୋଷରୁ ନାଶ ହେବଟି
ପ୍ରମାଣ । ଏଣୁକରି ଆଳସ୍ୟକୁ ଦୂରେ ରୋହଇ । ଖନା କହେ ବୁଝି
ସୁଝି ସବୁ କାର୍ଯ୍ୟ କର । ୬୮ ।

## ବୃକ୍ଷାଦି ଉତ୍ତମ ରୂପେ ଜନ୍ମିବାକୁ ଉପାୟ

ମନୁଷ୍ୟ ମରେ ଯକ୍ଷ୍ମାରେ      ଗଛ ଲଗା ଘଇ ଚର୍ଚ୍ଚିରେ ।
ଘଷ୍ଟ ସହାରେ ଗଛ ବଢ଼େ,      ଗନ୍ଧ ବାଜି ମନୁଷ୍ୟ ମରେ ।୬୯।
ଯାହା ହାର ପ୍ରାଣୀମାନେ ବିନାଶ ହୁଅନ୍ତି । ଯକ୍ଷ୍ମାରେ ମର୍ତ୍ତ୍ୟପମାନେ
ଅତ୍ୟନ୍ତ ବଢ଼ନ୍ତି ॥ ସେହି ଗନ୍ଧରେ ମାନବ ଛେଜନ୍ତି ଜୀବନ । ତାର
ସର ଲାଗି ବୃକ୍ଷେ ହୋଇନ୍ତି ଫଳବାନ । ଯାହାର ଯେ ପ୍ରିୟ ତାକୁ ସେ
ହୁଅଇ-ଭଲ । ଅନ୍ୟର ପ୍ରାଣ ନାଶକ ଅଟେ ଅମଙ୍ଗଳ । ତେଣୁକରି
ଯାର ଯାହାଠାରେ ସ୍ନେହ ଥିବ । ଅନ୍ୟଲୋକ କେତେକେତେ
ତାକୁ ନ ଛାଡ଼ିବ । ସେହି ସ୍ନେହ ଥିଲେସିନା ଅମୃତ ଅଟଇ । ସ୍ନେହ
ଭାଙ୍ଗିଗଲେ ବିଷ ପ୍ରଭାବ ଦେଖାଇ । ଖନା ବାକ୍ୟ ମାନ ତଳ ଆହେ
ସୁଜନେ । ନିଶ୍ଚୟ ସୁଖଲାଭ କରିବ ନିଷ୍ଠି ଜନେ । ପ୍ରଥମ ଅଧ୍ୟାୟ
ଘନ ଲୋକିତ ବାଳିଭ । ଭଣିଲେ ମଧୁସୂଦନ କୃଷି ତତ୍ତ୍ୱ ସାର ।୬୯।

# ଦ୍ୱିତୀୟ ଅଧ୍ୟାୟ

## ବୃଷ୍ଟି ଲକ୍ଷଣ

କାର୍ତ୍ତିକରେ ବୃଷ୍ଟି ହେଲେ ଊଣା । ଧାନ ଫଳଇ ଦୁଇଗୁଣ ।
କାର୍ତ୍ତିକ ମାସରେ ଅଳ୍ପ ବରଷା ହୋଇଲେ । ଦୁଇଗୁଣ ହୋଇ କରି ଧାନ୍ୟ ଫଳ ଫଳେ ॥ ସୁସ୍ଥ ହେବେ ପ୍ରାଣୀମାନେ ରହନ୍ତ ନିଶ୍ଚିତ । ବଡ଼ ଗଣଣୀର ନୟ ବିନୟ ପ୍ରଶସ୍ତ ॥ ଅନ୍ନଅଭାବ କାହାର ନହୁଅଇ ଜାଣ । ମହାଆନନ୍ଦରେ ପ୍ରାଣୀମାନେ ଦ୍ୟନ୍ତ ଧନ । ଶସ୍ୟ ଘରେ ବସୁମତୀ ସୁନ୍ଦର ଦିଶଇ । ଖନା ବଚନ କେବେ ଅନାଥ ହୁଅଇ ॥
କଳଇ ଶ୍ୱଶୁର ଲେଖା ଯୋଖା । ମେଘରୁ ବୁଝିବ ଜଳର ରେଖା ॥
ଛୋଟାଳ କୋଡ଼ଲ ଅସମ୍ଭ ହୋଇ, ମଧ୍ୟେ ମଧ୍ୟେ ଯେବେ ପବନ ବହୁ ॥ ଚଷାଙ୍କୁ କହ ବାନ୍ଧ ହଳ । ଆଜ ନୋହିଲେ କାଲି ଜଳ ।୨।
ଶୁଣ ହେ ଶଶୁର ପିତା ମୋହର ବଚନ । ଲେଖି ଲେଖି କମ୍ପାଇ ଭ୍ରମାଅ ନିଜ ମନ ॥ ଅଳପ ଶ୍ୱଶ୍ରୁ'ର ପିତା ସକଳ ଜାଣିଲେ । ଲୋକରେ ପୂଜିତ ପ୍ରାଣୀ ହୁଅନ୍ତି ଯେ ଭଲେ । ମେଘକୁ ଦେଖିଣ ତାର ଲକ୍ଷଣ ବୁଝିବ । ବରଷା ହେବା ନହେବା ସକଳ ଜାଣିବ ।
ଯେଉଁଦିନ ମେଘ ଦେଖ କୋଡ଼ଲ ଅସମ୍ଭବ । ଛୋଟାଳ ସେନ ଯେମନ୍ତ କୋଡ଼ ଅଛୁ କଏ ॥ ପବନ ବହୁଣ ଥିବ ତା ମଧ୍ୟରେ ଯେବେ । ଦୁଇଦିନ ମଧ୍ୟରେ ବରଷା ହେବ ତେବେ । ଚଷାଙ୍କୁ ଭଣ୍ଡଅ ହଳ ବଳଦଙ୍କୁ ତାର । ଆଖିଥାଉ ଯନ୍ତ୍ରକରୁ ହେଲାଣି ସେ:ଚଳ ॥ ଆଜ ଦୁଇ ବୃଷଭଙ୍କ ବାନ୍ଧବନ୍ତି ହଳ । ଅଦାଉରେ ଚାହିଁଥାଇ ହେଉଛ ଭକଳ ॥ ପାଣ୍ଡୁର ବର୍ଣ୍ଣର ମେଘ ବରଷେ ବହୁଳ । ଶ୍ୱଶୁରଙ୍କୁ ଡାକ ଖନା କହଇ ଏମନ୍ତ ॥

ପଶ୍ଚିମ ଧନୁ ନିତ୍ୟ ଖରା, ପୂର୍ବ ବର୍ଷେ ଝଡ଼ ।୩।

ପଶ୍ଚିମ ଦିଗରେ ଜାଣ ଧନୁ ଉଦେହେଲେ । ସନ୍ଧ୍ୟା ସମୟରେ ଅବା ପ୍ରଭାତ କାଳରେ ।। ଅନାବୃଷ୍ଟି ହେବାକଥା ଜାଣିବ ନିକର । ଅନ୍ନବିନା ଦେଶରେ ପଡ଼ିବ ହାହାକାର ।। ପୂର୍ବଦିଗେ ଯେବେସେହୁ ଉଦୟ ହୁଅଇ । ପ୍ରବଳ ବରଷା ଯୋଗେ କୃଷି ନାଶଯାଇ । ଆଗ କରି ଚଷାଭାଇ ବେଳକ୍ଷଣ କରି । ନୋହିଲେ ପସ୍ତାଛେ ଦିନ ହେବୁ ହରି ହରି । ୩ ।

ଚୈତ୍ର ମାସେ ଥରି ଥରି, ବୈଶାଖରେ ଝଡ଼ ପଥର ।
ଜ୍ୟେଷ୍ଠ ମାସରେ ତାରା ଫୁଟେ, ମଣ୍ଡିରେ ଅଧିକ ବର୍ଷା ଘଟେ । ୪ ।

ଶୀତ ହୁଅଇ ଯେ ବର୍ଷ ଚଇତ୍ର ମାସରେ । ବୈଶାଖରେ ଝଡ଼ ବୃଷ୍ଟି ପଥର ସଙ୍ଗରେ ।। ପ୍ରବଳ ବରଷାହୋଇ ତବେ ନ ଖଣ୍ଡଇ । ମହାଗରଜନେ ବସୁନ୍ଧରା କମ୍ପିଯାଇ ।। ଆକାଶେ ଅତି ନିର୍ମଳ ଜ୍ୟେଷ୍ଠ ମାସେ ଦିଶି । ସୂର୍ଯ୍ୟ ତାରାମାନେ ଅତ୍ୟନ୍ତ ପ୍ରକାଶି ସେ ବର୍ଷ ମଣ୍ଡିରେ ବହୁ ବରଷା ହୁଅଇ । ଆଗକରି କୃଷି କର୍ମ କର ଚଷାଭାଇ । ୪ ।

ରାମଧନୁ ପୂର୍ବେ ଉଠିଲେ, ବର୍ଷାର ମଣ୍ଡି ଏକାକାରେ । ୫ ।

ପୂର୍ବଦିଗେ ରାମଧନୁ ଯେବେ ଉଦେ ହୋଇ । ସେ ବର୍ଷ ଏହା ଜାଣି ପୂର୍ବୁ ହୋଇଥିବ ସାବଧାନ ।। ଆଳସ୍ୟ ଘରରେ ବସି ରହିବ ଯେ ଜନ । ଶେଷକୁ ନଷ୍ଟହୁ ସେହୁ ହେବ ସ୍ତ୍ରୀଜନମାନ । ଲେଲେବେଲେ ଏ ବଚନ ଅନ୍ୟଥା ନୁହଇ । ମିହିରଙ୍କ ଅଗ୍ରତରେ ଖନା ଏହା କହି ।୫।

ପୌଷ ଗରମି ବୈଶାଖେ ଝଡ଼, ପହିଲି ଆଷାଢ଼େ ଭରିବେ ଗଡ଼ ।
ଖନା କହେ ଶୁଣ ହେ ସ୍ୱାମୀ, ଶ୍ରାବଣ ଭାଦ୍ରବେ ନ ହୁଏ ପାଣି ।୬।

ପୌଷରେ ଶୀତ ନ ହୁଏ ଯେଉଁ ବରଷରେ । ଆଉର ଶୀତ ହୁଅଇ ବୈଶାଖ ମାସରେ ॥ ଆଷାଢ଼ମାସରେ ଆଦ୍ୟ ଭାଗେ ବର୍ଷା ହୋଇ । ଶ୍ରାବଣ ଭାଦ୍ରବେ ଏକ ବିନ୍ଦୁ ପଡ଼େ ନାହିଁ ॥ ଅନାବୃଷ୍ଟି ହେବ ବୋଲି ଜାଣିବ ସୁଜନ । ପୂର୍ବରୁ ସଞ୍ଚୟ କରି ଗୃହେ ରଖ ଧାନ୍ୟ । ନୋହିଲେ ପଛକୁ ବହୁ ଅବସ୍ଥା ଭୋଗିବ । ମିହିରଙ୍କୁ ଖନା କହେ ଏମନ୍ତ ପ୍ରସ୍ତାବ । ୬ ।

ଉଦୟେ ବରଷା ଶନିରେ ତାପ, ସେ ବରଷ ଧର ଦୁଃଖରେ ଭସ ।

ବର୍ଷର ଆରମ୍ଭ କମ୍ବା ବରଷାର କାଳେ । ଉଦୟରେ ବରଷା ହୁଅଇ ପ୍ରବଳରେ ॥ ରଜନୀରେ ଆକାଶ ହୁଅଇ ସୁନିର୍ମଳ । ଏହି ଅଟେ ପୃଥିବୀର ବଡ଼ ଅମଙ୍ଗଳ ॥ ଅନାବୃଷ୍ଟି ଯୋଗୁଁ ଶସ୍ୟହାନି ହୁଏ ଜାଣ । ନୋହିଲେ ନମିଳେ ଧାନ୍ୟ ପୃଥିବୀରେ ପୁଣ ॥ ଅନ୍ନ ବିନା ହାହାକାର ପଡ଼ଇ ଦେଶରେ । ଖନା କହଇ ଏମନ୍ତ ସ୍ୱାମୀଙ୍କ ଆଗରେ । ୭ ।

ବେଙ୍ଗ ଡ଼ାକଲେ ଘନ ଘନ, ଶୀଘ୍ର ବୃଷ୍ଟି ହେବ ଜାଣ ।

ଶୁଣ ଚଷାଭାଇମାନେ ମନ ଆନନ୍ଦରେ । ବେଙ୍ଗମାନେ ଘନ ଘନ ରାବନ୍ତି ଯେବେକେ ॥ ଅନନ୍ତରେ ବର୍ଷ ହେବ ବୋଲିଣ ଜାଣିବ ଅଳସ୍ୟ ତେଜିଣ କୃଷି କର୍ମ ଆଚରିବ ॥ ପଛମନ କଲେ ନଷ୍ଟେ ହେବ ହୃନମାନ । ଖନାର ବଚନ ହେବୁକର ସୁଜ୍ଞଜନ । ୮ ।

ଚନ୍ଦ୍ରମଣ୍ଡଳର ମଧ୍ୟେ ତାରା, ଜଳବରଷେ ମୂଷଳ ଧର । ୯ ।

ଚନ୍ଦ୍ରମଣ୍ଡଳର ମଧ୍ୟେ ତାରା ଯେବେ ଥାଇ । ପ୍ରବଳ ବରଷା ଅଳ୍ପ ଦିନରେ ହୁଅଇ । ବାଟ ଘାଟ ପୁଷ୍କରିଣୀ ଜଳେ ପୂର୍ଣ୍ଣ ହେବ । ଗତାଗତ ପଥ ପ୍ରାଣୀମାନଙ୍କୁ ନ ଥିବ । ସାବଧାନ ହେବେ ଯେତେ କର୍ମ ଆଚରିବ । ବୃଷ୍ଟି ମଧ୍ୟେ କେଉଁ କାମ କରି ନ ପାରିବ ।

ଦୂର ସଙ୍ଗ ନକଟେ ଜଳ, ନକଟ ସଙ୍ଗ ଉପଛଳ । ୧୦ ।

ଆକାଶ ଚନ୍ଦ୍ର ମଣ୍ଡଳକୁ ଦେଖ ଭଲେ । ଯଦ୍ୟପି ଦୂରରେ ସଙ୍ଗ ଯେବେ ଥିବ ହୋଇ ॥ ଏତେ ନିକଟରେ ଜଳ ବରଷଇ ଜାଣ । ବର୍ଷାର ଆଗମ ହୁଏ ବୁଝ ହେ। ପ୍ରମାଣ । ନିକଟରେ ଯେବେ ସଙ୍ଗ ହୁଅଇ ଚନ୍ଦ୍ରର । ବହୁ ଦିନମଧ୍ୟରେ ବର୍ଷା ହେବାର ଏ ଫଳ ॥ ଅନାବୃଷ୍ଟି ହୁଏ ପୁଣି ଲକ୍ଷଣେ ମହୀରେ ଦୁଃଖ ଭୋଗ କରନ୍ତି ପ୍ରାଣୀମାନେ ॥

ଶ୍ରାବଣ ମେଘ ଉପଗତ ବାୟୁ ସେଦିନ ବୃଷ୍ଟି କେ ପଡ଼ିବ କାହୁଁ ।୧୧

ଶ୍ରାବଣ ମାସରେ ମେଘ ଯେ ଉଠେ ଉଠିବ । ତାର ଉପଗତ ବଗୁଁ ପବନ ବହିବ । ସେଦିନ ପ୍ରବଳ ବର୍ଷା ହୋଇବ ନିଶ୍ଚୟ । ଜଳାର୍ଣ୍ଣବ ହେବ ଧରା ନ କର ସଂଶୟ ॥ ବାହାରକୁ ଯାଇଥିଲେ ଗୃହକୁ ଆସିବ ॥ ନୋହିଲେ ବହୁତ କଷ୍ଟ ଅବସ୍ଥା ହେଇବ । ଆହେ ସୁପଣ୍ଡିତମାନେ ଏହା ଲେଖ ହୁବ । ନିଶ୍ଚେ ଯଶ ପ୍ରଶଂସା ଲଭିବ ଅପ୍ରମାଦେ ।

ଅଦିନ ଭୁତୁଡ଼ି ଦୁଇ ପ୍ରହରେ, ଦେଖ ଯାଏ ଯେବେ କେଉଁ ଦିନରେ ଆଠଦିନ ମଧ୍ୟେ ବରଷେ ଜଳ, ପ୍ରାଣୀଙ୍କୁ ନାହିଁ ମିଳଇ ସ୍ଥଳ ।୧୨।

ଅଦିନ ଭୁତୁଡ଼ି ଯେବେ ମଧ୍ୟାହ୍ନରେ ହୋଇ । ଚୌଦିଗେ ଘୋଟଇ ଧୂଳି ବେଳ କାଳ ନୋହି । ଗ୍ରାମ ଆଦି ନ ଦିଶଇ ନ ଦିଶଇ ଘର । ବୃଦ୍ଧଜନମାନେ ମନେ ଏହା ଥାଅ ସ୍ମର ॥ ଆଠଦିନ ମଧ୍ୟରେ ବରଷେ ଘନ ଘନ । ଜଳର ପ୍ରବାହ ଦ୍ୱାର ଭୁବନ ଉଚ୍ଛନ୍ନ । ପଶୁ ପକ୍ଷୀ ଚତୁର୍ଗଣ ବିନାଶ ଲଭନ୍ତି । ମିହିର ଅଗ୍ରତେ ଖନା ଏହା କହନ୍ତି ।

## ବନ୍ୟା (ନଈବଢ଼ି) ଲକ୍ଷଣ

ପୂର୍ଣ୍ଣ ଆଷାଢ଼େ ଦକ୍ଷିଣା ବହେ, ବରଷନ୍ତି ବନ୍ୟା ହୁଏ । ୧୩ ।

ଯେଉଁ ବର୍ଷ ଆଷାଢ଼ମାସର ପରବେଶ । ଦକ୍ଷିଣା ପବନ ଯେବେ ବହଇ ବିଶେଷ ! ମାସ ପୂର୍ଣ୍ଣ ପରଯନ୍ତେ ନ ହୁଅଇ ସ୍ଥିର ଜାଣିବ ସେ ବର୍ଷ ବନ୍ୟା ହୋଇବ ପ୍ରବଳ । ଶସ୍ୟ ଆଦି ବିନାଶ ହୋଇବ ତେଣୁ କର । ପୂର୍ବରୁ ସାବଧାନରେ ଚଳ ନାଶ ନରୁ ।୧୩

ବର୍ଷ ପ୍ରଥମେ ଈଷାନେ ଯେବେ, ବାୟୁ ବହଇ ଅବିଚ୍ଛିନ୍ନ ଭାବେ ।
ଉଚିତ ବରଷା ହୁଅଇ ତେବେ, ଖନା କହେ ମିଛ ନୁହଇ କେବେ ।

ବର୍ଷ ଆରମ୍ଭରୁ ଯେବେ ଈଶାନ କୋଣରୁ । ପବନ ବହଇ ଖରେ କେଉଁ କାରଣରୁ ॥ ସେ ବରଷ ପୃଥ୍ୱୀରେ ସୁବୃଷ୍ଟି ହୁଅଇ । ତେଣୁ ଶସ୍ୟବୃଦ୍ଧି ହୁଏ କେବେ ନଷ୍ଟ ନୋହି । ଧାନ୍ୟାଦି ଶସ୍ୟରେ ପୂର୍ଣ୍ଣ ହୁଏ ବସୁମତୀ । ପ୍ରାଣୀମାନେ ସନ୍ତୋଷରେ ବିହରନ୍ତି ନିତି । ଯଥାକାଳେ ବରଷା ହେବାର ବେଳ ଜାଣି । ସବୁ ଶସ୍ୟମାନେ ଉପୁଜନ୍ତି ଚହୁଁ ପୁଣି ।୧୪।

ବ୍ରାହ୍ମଣ, ନାପିତ, ବରଷା, ବଢ଼ି, ଦକ୍ଷିଣା ପାଇଲେ ଯାଆନ୍ତୁ ଘର ॥

ବ୍ରାହ୍ମଣ, ନାପିତ, ବର୍ଷା, ନଈବଢ଼ି ସ୍ଥିର । ବହୁତ ଜଞ୍ଜାଳ କରୁଥାନ୍ତି ଆସି ଘେର ॥ ଦକ୍ଷିଣା ପାଇ ବ୍ରାହ୍ମଣ ନାପିତେ ଗମନ୍ତି । ଦକ୍ଷିଣା ପବନେ ବର୍ଷା ନଈବଢ଼ି ଯାନ୍ତି । ଦକ୍ଷିଣା ନପାଇ କରୁ-ଥାନ୍ତି ସେ ଜଞ୍ଜାଳ । ଦକ୍ଷିଣା ପାଇଲେ ହଟି ଯାଆନ୍ତି ସତ୍ୱର ।୧୫।

ଅଧିକ ଆମ୍ବ ଅଧିକ ଧାନ,
ଅଧିକ ତେନ୍ତୁଳି ବନ୍ୟା ପ୍ରମାଣ । ୧୬ ।

ଯେଉଁ ବର୍ଷ ଆମ୍ବ ଫଳ ବହୁତ ହୁଅଇ । ସେ ବର୍ଷ ବହୁତାର ଧାନ୍ୟ ମଞ୍ଜିରେ ଜନ୍ମଇ । ତେଣୁ ମହା ଆନନ୍ଦରେ ଥାନ୍ତି ପ୍ରାଣୀଗଣ

ଯେଉଁ ଦ୍ରବ୍ୟ ଅଭାବ ହୁଅଇ କେଉଁ ପୁଣ । ବହୁତ ତେଲ୍ଲାଳ ଫଳ ହୁଏ ଯେଉଁ ବର୍ଷ । ନଷ୍ଟ ବୃଦ୍ଧି ହେତୁ ଶସ୍ୟ ଆଦ ଯାଏ ନାଶ ॥ ପ୍ରାଣୀମାନେ ବହୁତ କ୍ଳେଶ ଲଭନ୍ତି ନିଶ୍ଚୟ । ସୁପଣ୍ଡିତମାନେ ମନ ନକର ସଂଶୟ । ୧୬ ।

ପୌଷରେ କୁହୁଡ଼ି ବୈଶାଖେ ଫଳ,
ଯେଉଁଦିନ କୁହୁଡ଼ି ସେଦିନ ଜଳ ।

ଶନିର ସାତ ମଙ୍ଗଳ ତିନି, ଆଉ ସବୁବାରେ ଦିନ୍ ଦିନ । ୧୭ ।

କୁହୁଡ଼ିର ଗୁଣ ଏବେ ଶୁଣ ମନଦେଇ । ପୌଷମାସେ ଯେଉଁ ଦିନ କୁହୁଡ଼ି ହୁଅଇ ॥ ବୈଶାଖ ମାସରେ ବୃଷ୍ଟି ହେବ ସେହିଦିନ । ଏ କଥା ନିଶ୍ଚୟ କେବେ ନ ହୁଅଇ ଆନ ॥ ସେହି ବର୍ଷା ଯେବେ ଶନିବାର ଦିନ ହୁଏ । ବରଷା ନ ଛାଡ଼େ ପୁଣି ସାତଦିନ ଯାଏ । ମଙ୍ଗଳବାରେ ବରଷା ଆରମ୍ଭଇ ଯେବେ ॥ ତିନି ଦିନଯାଏ ବୃଷ୍ଟି ହୁଅଇଟି ତେବେ । ଆଉ ସବୁ ଦିବସରେ ବୃଷ୍ଟି ହେଲେ ଜାଣ । ସେହିଦିନ ଛାଡ଼ିଯାଏ ଶାସ୍ତ୍ରର ପ୍ରମାଣ । ୧୭ ।

କର୍କଟେ ଛରକଟ ସିଂହେ ଶୁଖା କନ୍ୟା କାଣେ କାଣେ ବାଣ ।
ବିନା ବାୟେ ତୁଳାରେ ବର୍ଷିଲେ କାହିଁରେ ରଖିବୁ ଧାନ ।୧୮।

ଶ୍ରାବଣରେ ଯେଉଁ ବର୍ଷା ବହୁତ ବର୍ଷଇ । ତଥେ ମାଟ ହେଲେ କେବେ ଛାଡ଼ିଣ ନ ଯାଇ । ଭାଦ୍ରବ ମାସରେ ବୃଷ୍ଟି ଅଳ୍ପ ହୋଇବାରୁ ପାଣିପାଇ ଶୁଖିଯାଏ ଧାନ୍ୟଗଛ ମୂଳୁ ॥ ଆଶ୍ୱିନରେ ପୁଣି ବୃଷ୍ଟି ହୁଅଇ ବହୁତ । ପ୍ରାଣୀମାନେ ହୋଇ ତ ଛାଡ଼ନ୍ତି ଆତଯାତ ॥ କାର୍ତ୍ତିକ ମାସେ ପବନ ନ ଥାଇ ବହୁଣ । କେବଳ ଅଳ୍ପକେ ହୋଇଲେ ଆଦ୍ର ଥାଇ ରସା * ॥ ଧାନ୍ୟ ଆଦ ସେ ବରଷ ବିଶେଷ

* ରସା—ଭୂମି

ହୁଅଇ । ଯେବେ ଖାଇଲେ ବନ୍ଧିଲେ କେବେ ନ ସରଇ । ଯଥା-
ଆନନ୍ଦରେ ପ୍ରାଣୀମାନେ ନ୍ୟନ୍ତି ଏନ । ଶସ୍ୟପୂର୍ଣ୍ଣ ବସୁନ୍ଧରା ଦିଶଇ
ଶୋଭନ ।। ଧାନ୍ୟ ରଖିବାକୁ ସ୍ଥାନ ସୃଷ୍ଟିକୁ ଲମିବେ । ଖନାବଚନ
ଅନ୍ୟଥା ନୁହେଁ କେତେବେଳେ । ୧୮ ।

ନୁହେଁ ବର୍ଷେ ଆଗ୍ରାଣେ, ରଜା ଯାଏ ମଗଣେ
ବର୍ଷେ ଯଦି ପୌଷେ, କଉଡ଼ି ହୁଏ ତୁଷେ ।
ଯଦି ବରଷଇ ମାଘର ଶେଷେ ।
ଧନ୍ୟ ସେ ରାଜ୍ୟ ଧନ୍ୟ ସେ ଦେଶ ।
ଯବ ବର୍ଷେ ଫାଲଗୁନେ, ଚନା ଦାଲି ଫଳେ ଦ୍ୱିଗୁଣେ । ୧୯ ।

ବରଷା ହୁଅଇ ମାର୍ଗଶିର ମାସେ ଯେବେ । ଶସ୍ୟ ମାନଙ୍କରେ
କୀଟ ଲଗିଥାନ୍ତି ତେବେ ।। ସେ ଦେଶର ଲୋକ ପ୍ରଜା ନ ପାଆନ୍ତି
ଦେଇ । ଭିକ ମାଗି ବୁଲୁଛନ୍ତି ଦ୍ୱାରେ ଦ୍ୱାରେ ଯାଇଁ ।। ପୌଷ
ମାସେ ବରଷିଲେ ବଡ଼ ଅମଙ୍ଗଳ । ଅଟାଡ଼ ହୁଅଇ ଶସ୍ୟ କ୍ଷେତ୍ରରେ
କେବଳ ।। କାନ୍ଥାର ପଡ଼ଇ ଜାଣ ସେହି ବରଷରେ । ମନଦୁଃଖେ
ପ୍ରାଣୀମାନେ ଥାନ୍ତି ନିରନ୍ତର ।। ମାଘ ମାସେ ବର୍ଷା ହେଲେ ରବି
ଶସ୍ୟମାନ । ଅଧିକ ଲାଭ ହୁଅଇ ଦେବୁ ଜାଣ ଘେନ ।। ସବୁ
ଶସ୍ୟମାନ ଆଗମୀକୁ ହୁଏ ଜାତ । ସେ ଦେଶରେ ଦୁଃଖ ନ ପଡ଼ଇ
କଦାଚିତ ।। ତେଣୁ ସେ ସେ ଦେଶକୁ ଧନ୍ୟ କହିବା ଅଟଇ । ଆଉକି
ସେ ଦେଶେ ନରପତି ଧନ୍ୟ ହୋଇ ।। ମେଘ ବରଷଇ ଯେବେ
ଫାଲଗୁନ ମାସରେ । ଚନା ଆଦି ଶସ୍ୟମାନ ହୁଏ ବିଶେଷରେ ।।
ପ୍ରାଣୀମାନଙ୍କ ଘରରେ ଖନାଛନ୍ତି କହି । ସେତେ ବଳେ ଏହି ବାକ୍ୟ
ଅନ୍ୟଥା ନୁହଇ । ୧୯ ।

ଆଷାଢ଼ ନବମୀ ଶୁକ୍ଳପକ୍ଷ, କ ଭର ଶ୍ୱଶୁର ଲେଖେ ହୋଇ ।
ଯଦି ବରଷଇ ମୂଷଳଧାରେ, ମଛି ସମୁଦ୍ରରେ ବଗ ଚରେ ।

ଯବ ବରଷଇ ଅନପେ ଘନ, ପର୍ବତ ଉପରେ ଖେଳଇ ମୀନ ।
ବରଷଇ ଯବ ଝିମି ଝିମି, ଶସ୍ୟର ଭାର ନ ସହେ ମେଦିନୀ ।୨୦।

ଆଷାଢ଼ମାସ ଶୁକ୍ଳ ପକ୍ଷ ନବମୀରେ । ମେଘ ବରଷଇ ଯେବେ ପ୍ରବଳ ଭାବରେ । ମୂଷଳ ଧାର ପ୍ରାୟେ ବରଷିଲେ ଜଳ । ସେହି ବର୍ଷ ଅନାବୃଷ୍ଟି ହେବ ହେଲୁ କର ॥ ମରୁଡ଼ିରେ ଜଳ ଶୋଷ କୃଷି ନାଶଯାଏ । ସମୁଦ୍ର ମଧ୍ୟରେ ବକପକ୍ଷୀ ଚରୁଥାଏ । ଅଳ୍ପବର୍ଷା ହୁଏ ସେହି ଦିବସରେ ଯେବେ । ପ୍ରବଳ ବୃଷ୍ଟି ହୁଅଇ ସେ ବର୍ଷରେ ଯେବେ ॥ ପର୍ବତ ଅଗ୍ରଭାଗକୁ ଜଳ ଲାଗିଯାଇ । ତାହାର ଶିଖରେ ଯେଣୁ ମୀନ ଯେ ଖେଳଇ । ଏହି ଦୁଇ ପ୍ରକାରର ଦୁର୍ଭିକ୍ଷ ହୁଅଇ । ଧାନ୍ୟ ଆଦି ଶସ୍ୟମାନେ ଲୋକେ ନ ପାଇ । ଯେବେ ଝିପିଝିପି ବର୍ଷା ହୁଏ ସେହିଦିନ । ଧାନ୍ୟାଦି ଶସ୍ୟରେ ଧରା ହୁଏ ପରିପୂର୍ଣ୍ଣ । ଅନାହାର ସେ ଦେଶରେ ନୁହଇ କାହାର । ଖନା କହେ ସୁଜ୍ଞଜନ ମାନେ ହେବୁଝର । ୨୦ ।

ଜ୍ୟେଷ୍ଠେ ଶୁକ୍ଳ ଆଷାଢ଼େ ଧାରା, ଶସ୍ୟର ଭାର ନ ସହେ ଧରା ।୧୨।

ଯେଉଁ ବର୍ଷ ବର୍ଷା ନୁହଇ ଜ୍ୟେଷ୍ଠମାସେ । ଶୁକ୍ଳପକ୍ଷେ ବସୁମତୀ ରହଇ ଶୁଷ୍କବେଶେ । ଆଷାଢ଼ ମାସରେ ବୃଷ୍ଟି ହୁଏ ଘନ ଘନ । ସେ ବର୍ଷ ପୃଥିବୀରେ ଶସ୍ୟ ହୁଏ ପରିପୂର୍ଣ୍ଣ ॥ ପ୍ରାଣୀମାନଙ୍କର ମନ ଆନନ୍ଦ ହୁଅଇ । କ୍ଷୁଧା ତୃଷ୍ଣା ଆଦି ସବୁ ଯାଏ ଦୂରହୋଇ ॥ ଶୁଭ ସୁଲକ୍ଷଣ ଏହି ଖଣ୍ଡରୁ ବୁଝିବ । ପଣ୍ଡିତ ମାନେ ସଂଶୟ ବହିବ ।

କାର୍ତ୍ତିକ ପୂର୍ଣ୍ଣିମା କର ଆଶ, ଖନା ଡ଼ାକ କହେ ଶୁଣରେ ଚଷା ।
ନିର୍ମଳ ଆକାଶେ ନୁହେଁ ମଳୁଚ, ସେ ବର୍ଷ ରବି ଫସଲ ବହୁତ ॥
ରାତିରେ ବରଷା ହୋଇଲେ ଜଳ, କ୍ଷେତକୁ ପିଇଣ ଅଟଇ ନଷ୍ଟକ ॥
ଖନା କହେ ଚଷାଭାଇ ଶୁଣ ମୋର ବାଣୀ । କାର୍ତ୍ତିକମାସ ପୂର୍ଣ୍ଣିମା ରାତକାଳେ ପୁଣି । ପରିଷ୍କାର ହୋଇଣ ଆକାଶ ଶୋଭାପାଇବ, ଯବେ

ମାଘ ପବନ ଯେବେ ଶ ନ ବହଇ । ଜନମାନେ ବରଷା ନ ହୁଏ ସୃଷ୍ଟି ଯେବେ । ଉତ୍ତଶସ୍ୟ ପ୍ରାପତ ଅଧିକ ହେବ ତେବେ । ସେହି ବନ ପ୍ରବଳ ବରଷା ଯେବେହୋଇ । ତାହାରସଙ୍ଗେ ପବନ ଭଲରୁ ବହଇ । ଶସ୍ୟଆଦ ନଷ୍ଟ ହୋଇପିବଟି ନପ୍ଛତ । ପଞ୍ଚଗ୍ରାମ ମାନ ସବୁ ହୁଅଇ ଅନର୍ଥ । ଅକାରଣେ ଉଦ୍ଧ ଷେହେ ପିବ କାନ୍ଧି-ପାଇଁ । ଜସ୍ୱଣେ ଫେଷଡ ସିନା ମୁଣ୍ଡେ ହାତ ଦେଇ ।୨୨।

ମାଘମାସେ ବର୍ଷା ହେବା, ରାଜା ପୁଣ୍ୟେ ପ୍ରଜାର ସେବା ।୨୩।

ଯେଉଁ ବର୍ଷ ଘନଘନ ବୃଷ୍ଟି ମାଘମାସେ । ସେହିବର୍ଷ ଶସ୍ୟବୃଦ୍ଧି ହୁଅଇ ଯେ ବେଶେ । ତଥା ସଭଙ୍କର ଗୃହେ ନ ମିଳଇ ସ୍ଥାନ । ନୃପତିର ଭଣ୍ଡାର ହୁଅଇ ସମ୍ପୂର୍ଣ୍ଣ । ପ୍ରଜାମାନେ ମହାଆନନ୍ଦରେ ନ୍ୟସ୍ତ ଧନ । ଶସ୍ୟଲାଭ ଯୋଗୁଁ ସଦା ହରଷିତ ମନ ॥ ଦ୍ୱୀ.ଧିମାନେ ହଷ୍ଟିଦାନ୍ତ ପ୍ରାଣୀଙ୍କ ଦେହରୁ । ସୁଭ ସୁଲକ୍ଷଣ ଭାବ ବୃଦ୍ଧିହେବ ସୁଖରୁ ।

ଜ୍ୟେଷ୍ଠରେ ମାଉ ଆଷାଢ଼େ ଉର; କାଷ୍ଟି ମ ଢ଼ ଭରେ ଘର ।୨୪।

ଜ୍ୟେଷ୍ଠ ମାସେ ଶତନେମାଷ ବରଷା ନ ହୋଇ । ସମ ଶୀତଳ ଭାବରେ ଯେବେ ଥାଇ ମହୀ । ଆଷାଢ଼ ମାସ ଆଦ୍ୟରୁ ବରଷେ ପ୍ରବଳ ॥ ଜାଣିବ ପୃଥୀକଏହୁ ଅଟେ ସୁମଙ୍ଗଳ ॥ ସେ ବର୍ଷ ଶସ୍ୟରେ ପୂର୍ଣ୍ଣ ହୁଅ ବସୁମତୀ । ପ୍ରାଣୀମାନଙ୍କର ଧର୍ମ ମତେ ରହେ ମତି । କାହାର ନୁହଁଇ ଅନ୍ନଭାବ କେତେବେଳେ । ଖନାର ବଚନ ମନେଉଖ ଅବହେଳେ ।୨୪ ।

ଯଦ ହୁଏ ଚଇତେ ବୃଷ୍ଟି, ତେବେ ହୁଏ ଧାନ ସୃଷ୍ଟି ।୨୫।

ବରଷା ହୁଅଇ ଯେବେ ଚୈତ୍ର ମାସରେ । ସେ ବର୍ଷ ବହୁତ ଶସ୍ୟ ହୁଅଇ ମହୀରେ ॥ ତେଣୁ ସବୁ ପ୍ରାଣୀମାନେ ରହନ୍ତି ସୁଖରେ କୋମଳ ବଚନମାନ ଭାଷଇ ସୁଖରେ । ଦରିଦ୍ରାବସ୍ଥା ଅଙ୍ଗରୁ ହୋଇ ଯାଏ ଦୂର । ଚଳେମନ୍ତ୍ର ମନ ଦୁଃଖ ନଥାଏ କାହାର ।୨୫ ।

ବରଷତେ ମେଘ ମକରେ, ଧାନ ଫଳ ହୁଏ ତେଜରେ । ୨୭ ।

ମାଘମାସେ ବରଷା ହୋଇଲେ ଘନ ଘନ । ତେଜ ଜମିମାନ ହୁଏ ଶସ୍ୟେ ପରିପୂର୍ଣ୍ଣ ॥ ଖାଲ ଢିପ ସବୁ ଜମି ନିର୍ଣ୍ଣିତ ହୁଅଇ । ତେଣୁକରି ଫଳଲାଭ ବିଶେଷ ଅଟଇ । ଆନନ୍ଦରେ ପ୍ରାଣୀମାନେ ରଜନୀ ଦିବସେ ମଗ୍ନରେ ରହନ୍ତି ଖନା ମିହିରଙ୍କୁ କହେ । ୨୭ ।

ଜ୍ୟେଷ୍ଠ ଶେଷ ବର୍ଷିଲେ ଜଳ, ଦେଶେ ହୁଅଇ ସୁମଙ୍ଗଳ ।
ଆଷାଢ଼େ ଜଳ ଶସ୍ୟ ଭଲ, ଶ୍ରାବଣେ ଭାର ନ ସହେ ଧସ୍ୱ ।
ଭାଦ୍ରବ ମେଘ ନୁହେଁ ଭଲ, ଆଶ୍ୱିନ ଜଳରେ ସୁଫଳ ।
କାର୍ତ୍ତିକ ବରଷା ହୀନମାନ, ଅଗ୍ରାଣେ ବରଷା ଲେକସାନ ।
ପୌଷେ ଶସ୍ୟ ଯାଇ ନାଶ, ଖନା କହେ ସର୍ବଶେଷ ।୨୭।

ଜ୍ୟେଷ୍ଠମାସ ଶେଷ ଯେବେ ବରଷା ହୁଅଇ ଦେଶକୁ ମଙ୍ଗଳ ହୋଇ ଜାଣିଥାଅ ଭାଇ ॥ ଆଷାଢ଼ମାସେ ବରଷା ହୋଇଲେ ପ୍ରବଳ । ଶସ୍ୟେ ପରିପୂର୍ଣ୍ଣ ଧରା ହୁଅଇ କେବଳ । ଶ୍ରାବଣ ବରଷା ରସା ଶସ୍ୟ ବୃଦ୍ଧି ଲାଭ । ଭାଦ୍ରବର ମେଘ ଜେବେ ନୁହେଁ ଶସ୍ୟ ଲାଭ । ଆଶ୍ୱିନେ ବର୍ଷିଲେ ଶସ୍ୟ ବିଶେଷ ଫଳଇ । କାର୍ତ୍ତିକରେ ବୃଷ୍ଟି ହୀନମାନୀ କରୁଥାଇ ॥ ମାର୍ଗଶିର ବୃଷ୍ଟି କ୍ଷତିକରଇ ବହୁତ । ପୌଷ ବରଷଣେ ଶସ୍ୟ ନାଶ ସୁନିଶ୍ଚିତ ॥ ଯେତେ ଶସ୍ୟ ଥିବ ସବୁ ବିନାଶ ହୁଅଇ । ଖନାର ବଚନ କେବେ ଅନ୍ୟଥା ନୁହଇ । ୨୭ ।

ଚଇତ୍ର କୁହୁଡ଼ି ଭାଦ୍ରବେ ବନ୍ତି, ମଣିଷ ମୁଣ୍ଡ ଯାଏ ଗଡ଼ଗଡ଼ ।୨୮

ଚଇତ୍ରେ ମାସେ କୁହୁଡ଼ି ପ୍ରବଳ ହବରେ । ରଜନୀ ଦିବସେ ବ୍ୟାପିଥାଏ ନିରନ୍ତରେ ॥ ନଦୀ ବୃଦ୍ଧି ଲଭେ ପୁଣି ଭାଦ୍ରବ ମାସରେ । ଶସ୍ୟହାନି ପ୍ରାଣପୀଡ଼ା ହୁଏ ଜଗତରେ ॥ ପ୍ରାଣୀମାନ ବିନାଶ ଅବସ୍ଥାତେ । ନରମୁଣ୍ଡମାନ ମଧ୍ୟରେ ଯେ ଗଡ଼େ ନିତ୍ୟ । ୨୮ ।

ଯେ ବାର ବାର ଗୃହିକା ପାତ ସମୁଦ୍ରର ଘରେ,
ସର୍ବଦା ମଙ୍ଗଳ ବୋଲି କହଇ ଶାସ୍ତ୍ରରେ ।
ନାନା ଶସ୍ୟ ପରିପୂର୍ଣ୍ଣ ହୁଅଇ ମେଦିନୀ,
ଖନା କହେ ମିହିରଙ୍କୁ ଏହା ଥାଅ ଜାଣି । ୨୯ ।

ସମୁଦ୍ରର କୂଳେ କୁଆପଥରେ ବର୍ଷିଲେ । ସେହିବର୍ଷ ବହୁଶସ୍ୟ ହୁଅଇ ସଂସାରେ ।। ଶସ୍ୟ ଲଭ ହେଲେ ଆନନ୍ଦରେ ଥାନ୍ତି ପ୍ରାଣୀ । ଜାହା ମନରେ ହରଷ ନ ଥାଇ ଯେ ପୂର୍ଣ୍ଣି । ଶସ୍ୟର ଭାର ମେଦିନୀ ସହି ନ ପାରଇ । ପ୍ରାଣୀମାନଙ୍କ ହୃଦରେ କଉତୁକ ଫଳଇ । ହରଷ ହୋଇଣ ତନ ମନଭରି ପୂରି । ମହୀରେ ପ୍ରାଣୀ ବଞ୍ଚୁଥାନ୍ତି ସୁଖେ ଭାଳ । ମିହିରଙ୍କୁ ଡାକ ଖନା ଏମନ୍ତ କହଇ । ଏ କଥା ଗୋଟିକରେ ସଂଶୟ କିଛୁ ନାହିଁ । ୨୯ ।

ଶନିରଜା ମଙ୍ଗଳ ପାତ୍ର, ବୃଷ ଚଷୁଥା କେବଳ ମାତ୍ର । ୩୦ ।

ଯେଉଁ ବର୍ଷ ଶନିଗ୍ରହ ରଜା ଥାଏ ହୋଇ । ତାହାର ସଙ୍ଗରେ ମନ୍ତ୍ରୀ ମଙ୍ଗଳ ଅଟଇ ।। ଶସ୍ୟହାନି ସେ ବରଷ ହୋଇବ ନିଶ୍ଚୟ । ଶ୍ରମ ବୃଥା ହୁଏ ମନେ ଜନର ସଂଶୟ । ଅନ୍ନବିନା ପ୍ରାଣୀ ମାନେ ଲଭୁଥାନ୍ତି ଦୁଃଖ । ଏନେ ମାତ୍ର ସେ ବରଷ ନ ମିଳଇ ସୁଖ ।୩୦ ।

ବୁଧରଜା ଶୁକ୍ରମନ୍ତ୍ରୀ, ଶସ୍ୟ ପରିପୂର୍ଣ୍ଣ ହୁଏ ଧରିତ୍ରୀ । ୩୧ ।

ବୁଧରଜା ଶୁକ୍ର ମନ୍ତ୍ରୀ ହେଲେ ତାହାର । ସହି ନ ପାରଇ ଭାରା ଜଗନ୍ତ ନିତ୍ୟ ଆନନ୍ଦିତମନେ ।। ମାନବର ଦେହୁ ଦୂରେ ଯିବ ରୋଗ । ଅତେଉଁ ଜାଣିବ ନିଶ୍ଚେ ଶୁଭଫଳ ଯୋଗ ।୩୧। ଡାକଦେଇ କହେ ମିହିରର ସ୍ତ୍ରୀ ଶୁଣହେ ପଣ୍ଡିତ ପିତା । ଭାଦ୍ରବ ମାସରେ ଜଳ ବର୍ଷେ ଯେବେ ଥରହର ବସୁମାତା

ରାଜ୍ୟ ନାଶଯାଏ ଗୋ-ମଣ୍ଡଳ ହୁଏ ଆହର ବନ୍ୟ ପ୍ରବଳ ।
ମାଲୁଣୀ ଧରଣୀ ସ୍ୱାତୁଣୀ ଫେରଇ ଧାନ୍ୟ ନପାଇ କେବଳ । ୩୨ ।
ମିହିରର ନାରୀ ଖନା କହୁଛୁ ଏମନ୍ତ । ଶୁଣ ହେ ଶ୍ୱଶୁର ମୋର କଥା ହେଲ ଛଡ଼ି । ସ୍ୱାତୁକ ପୃଥ୍ୱୀକି ଛେବେ ଉପଦ ଘଟଇ । ଜଳରେ କେବଳ ପରିପୂର୍ଣ୍ଣ ହେଲେ ଭୟ ସେ ମଧ୍ୟରେ ଭୂମିକମ୍ପ ଯେବେ ତ ହୁଅଇ । ଜାଣିବ ପୃଥ୍ୱୀକି ଛେବେ ଉପଦ ଘଟଇ । ପ୍ରାଣୀମାନଙ୍କ ଶରୀରେ ହୁଏ ନାନାରୋଗ । ଗୋ ମଣ୍ଡଳ ଦୁର୍ଭିକ୍ଷାଦି ଅମଙ୍ଗଳ ଯୋଗ । ନଦୀ ବୃଦ୍ଧି ହୁଏ ପୁଣି ପ୍ରବଳ ଭାବରେ ॥ ମାଲୁଣୀ ଘେନ ସ୍ୱାତୁଣୀ ବୁଲଇ ବାଣ୍ଡରେ ॥ ନେଉଁଲେ ନ ମିଳେ ଧାନ୍ୟ କେବେ ସେ ଦେଶରୁ । ନଷ୍ଟପ୍ରୁ କହିବ ଏହା ଦେଖିଣ ଆଗରୁ । ୩୨ ।

ମାସେ ପାଞ୍ଚ ରବି ପାଏ । ଝିଅ ଜଵା ଖସରେ ଯାଏ । ୩୩ ।

ଶୁଣ ହେ ମୋହର ସ୍ୱାମୀ ଖନା କହୁଅଛୁ । ଅମଙ୍ଗଳ ଫଳ ଏବେ ଚତୁରେଘନ ବାଛୁ । ଯେବଣ ବରଷେ ଏକମାସରେ ନିକର । ପାଞ୍ଚଥର ହୋଇଣ ପଡ଼ଇ ରବିବ ର । ସେ ବରଷ ବହୁତ ବରଷା ହୁଏ ଜାଣ । ନୋହିଲେ ଏକାବେଳେକେ ଅନାବୃଷ୍ଟି ପୁଣ । ମହା ଦୁର୍ଭିକ୍ଷ ହେବାରୁ ପ୍ରାଣୀମାନେ ନଷ୍ଟ । ସେ ବରଷ ଦୁଃଖରେ କାଟନ୍ତି ଜନସବୁ ॥ ଅମଙ୍ଗଳ ଚିହ୍ନ ଏହା ଜାଣିବା ଆଗରୁ । ଧନ ବ୍ୟୟ ନ କରିବ କେବେ ନିଜ ଘରୁ । ୩୩ ।

ଫାଲ୍‌ଗୁନେ ରେବତୀ ଯତନେ ରଇ, ଆଗାମୀ ବତ୍ସର ଗଣିଣ ପାଇ
ସପ୍ତମୀ ଅଷ୍ଟମୀରେ ହୁଏ ଧାନ । ନବମୀରେ ବନ୍ୟା ଦଶମୀରେ
ମୂଳ ସ୍ଥାନ । ୩୪ ।

ଫାଲ୍‌ଗୁନ ମାସ ସପ୍ତମୀ ଅଷ୍ଟମୀ ତିଥିରେ । ରେବତୀ ନକ୍ଷତ୍ରଯେବେ ପଡ଼ଇ ଯୋଗରେ । ପୃଥ୍ୱୀ ମଧ୍ୟ ଛେବେ ବହୁ ଶସ୍ୟ ହେବ

ଜାତ । ପ୍ରାଣୀଙ୍କର ତେଣୁ ପିଡା ହଉଛିତ ଶତ୍ରୁ । ନବମୀ ତଥିରେ ଯେବେ ରେବତୀ ହୁଅଇ । ଜଗୀ ବୃଷ୍ଟି ଲଭେ ଶସ୍ୟମାନ ନାଶଯାଇ । ଦଶମୀରେ ରେବତୀ ପ୍ରବେଶ ହୁଏ ଯେବେ । ସବୁ ଶସ୍ୟ ବିନାଶ ହୁଅଇ ବୃଷ୍ଟି ତେବେ ।। ଚଷାଙ୍କର ମୂଳ ଶବଦ ନ ମିଳଇ । ପୂର୍ବ୍ ଏହା ଜାଣି ସାବଧାନ ଥିବ ହୋଇ । ୩୪ ।

ପାଞ୍ଚ ଗ୍ରହ ଏକତ୍ର ଘରେ, ସେହି ବର୍ଷ ଦୁର୍ଭିକ୍ଷ ହୁଏ ।
ଷଷ୍ଠ ସପ୍ତ ଅଷ୍ଟ ହେଲେ, ରାଜ୍ୟ ନାଶ ବଣ୍ଟନ୍ତେ । ୩୫ ।

ପାଞ୍ଚଗ୍ରହ ଯେବେ ଏକରାଶିରେ ରହନ୍ତି । ଦୁର୍ଭିକ୍ଷରେ ପ୍ରାଣୀମାନେ ତେବେ ନାଶ ଯାନ୍ତି ।। ଷଷ୍ଠଗ୍ରହ ସପ୍ତଗ୍ରହ ଅଷ୍ଟଗ୍ରହ ଅବା । ଏକ ଘରେ ଯେବେ କେଉଁକାଳେ ଯୋଗ ହିବା । ପ୍ରାଣୀମାନେ ମହା କଷ୍ଟ ଲଭନ୍ତି ଶରୀରେ । ରାଜ୍ୟ ହାନ ଦୁର୍ଭିକ୍ଷ ପଡ଼ଇ ଅବହେଳେ । ମହା ଅଶାନ୍ତିରେ ପ୍ରାଣୀମାନେ ଦ୍ୟନ୍ତ ହନ । ବଡ଼ ଅମଙ୍ଗଳ ହୋଇ ଚାନ୍ତି ଜନମନ । ୩୫ ।

ଜନ୍ୟେ ଶନଶ୍ଚର ସ୍ଥିତ ଯେବେ, ଦୁର୍ଭିକ୍ଷରେ ପ୍ରଜା ପୀଡ଼ା ତେବେ । ମୀନେ ଶନି ମହାବୋଷ ପ୍ରଜାପୀଡ଼ା ରାଜ୍ୟ ନାଶ । ୩୬ ।

କନ୍ୟା ରାଶିସ୍ଥିତ ଯେବେ ହୁଏ ଶନଶ୍ଚର । ଦୁର୍ଭିକ୍ଷ ହେବାରୁ ଦେଶେ ପଡ଼େ ହା ହା କାର । ପ୍ରାଣୀମାନେ କଷଣ ଲଭନ୍ତି ବହୁ ହନ । ଧନହାନ ପ୍ରାଣପୀଡ଼ା ଘେନ ସ୍ଥାନମାନ ।। ମୀନ ରାଶିରେ ଯଦ୍ୟପି ଶନଶ୍ଚର ସ୍ଥିତ । ସଂସାରକୁ ମହାକ୍ଳେଶ ହୁଏ ଉପସ୍ଥିତ । ପ୍ରାଣୀମାନେ ଶୁଭକାର୍ଯ୍ୟ କରି ନ ପାରନ୍ତି । ନ ଦେଖିବା ନ ଶୁଣିବା ଦେଖନ୍ତି ଶୁଣନ୍ତି । ୩୬ ।

ମଧୁମାସେ ପ୍ରଥମ ଦିବସେ ହୁଏ ଯେଉଁବାର ।
ରବିଶେଷେ ଭୂଜ ବର୍ଷେ ଦୁର୍ଭିକ୍ଷ ବୁଧବାର ।

ସୋମ ଶୁକ୍ର, ଗୁରୁବାର ପୃଥିବି ନ ସହେ ଶସ୍ୟର ଭାର ।
ପାଞ୍ଚ ଶନି ମୀନେ ପାଏ, ଘୃଣାରେ ଶକୁନି ମାଂସ ନ ଖାଏ । ୩୬ ।

ଚଇତ୍ର ମାସ ପ୍ରଥମ ଦିବସରେ ଜାଣ । ରବିବାର ହେଲେ ଅନାବୃଷ୍ଟି ପ୍ରମାଣ ।। ମଙ୍ଗଳ ବାର ପଡ଼ିଲେ ଜାଣିଲେ ନିଶ୍ଚିତ । ସେ ବରଷ ସଂସାରକୁ ବରଷା ବହୁତ ।। ବୁଧବାର ହେଲେ ମହା ଦୁର୍ଭିକ୍ଷ ହୁଅଇ । ଶସ୍ୟହାନି ପ୍ରାଣପୀଡ଼ା ଜଗତକୁ ଥାଇ ।। ଚୈତ୍ରମାସ ଆଦ୍ୟ ବୃହସ୍ପତି, ଶୁକ୍ର ସୋମବାର । ପଡ଼ିଥିଲେ ଶସ୍ୟ ଲାଭ ହୁଅଇ ପ୍ରଚୁର ।। ଯଦି ଆଦ୍ୟଦିନେ ଶନିବାର ପଡ଼େ ଯୋଗ । ଦେଶକୁ ନ ହେବ କେବେ ଶୁଭଫଳ ଭୋଗ । ପଞ୍ଚ ଶନିବାର ସେ ମାସରେ ଯେବେ ହୋଇ । ଘୃଣାବଶେ ନରମାଂସ ଗୃଧ୍ର ଯେ ନ ଖାଇ ।। ଶ୍ୱାନ ଶୃଗାଳାଦି ନରମାଂସ ଭକ୍ଷି ମାତି । ଖନା କହେ ଆଉ ତାଙ୍କ ନ ବଳାଇ ମତି । ୩୬ ।

ମଧୁମାସେ ତେରଦିନ ରହେ ଯେବେ ଶନି ।
ଖନା କହେ ସେ ବର୍ଷର ହୁଏ ଶସ୍ୟ ହାନି । ୩୭ ।

ଚୈତ୍ରମାସେ ତେରଦିନ ଯେବେ ଶନି ରହେ । ପୃଥିବୀ ମଧ୍ୟରେ ତେବେ ଶସ୍ୟହାନି ହୁଏ । ଅନ୍ନ ଅଭାବ ହୁଅଇ ପ୍ରାଣୀମାନଙ୍କର । ଭିକ୍ଷା ମାଗି ବୁଲୁଥାନ୍ତି କେତେ ନାରୀ ନର ।। ନାନାବ୍ୟାଧି ଆକ୍ରମଣ କରେ ମାନବଙ୍କୁ । ମିଥ୍ୟା ନମଣିବ କେହି ଖନା ବଚନକୁ । ୩୮ ।
ଅସ୍ତହେଲେ ସୂର୍ଯ୍ୟ ବସି । ମଧ୍ୟରେ ନ ହୁଏ ଶସ୍ୟ ରାଶି । ୩୯ ।

ଆଷାଢ଼, ମାସରେ ସୂର୍ଯ୍ୟ ଅସ୍ତ ସମୟରେ । ବସି ବସି ଅସ୍ତ ହୋନ୍ତି ଯେବଣ ବର୍ଷରେ ।। ସେ ବରଷ ଶସ୍ୟହାନି ହୁଅଇ ନିଶ୍ଚୟ ଖନାର ବଚନେ ଚିତ୍ତ ବଳାଶ ସଂଶୟ । ୩୯ ।

ତେର ଦନେ ତେର ପକ୍ଷ, ଭିକ୍ଷା ମାଗି ବୁଲେ ପକ୍ଷ ।୪୦।
କୌଣସି ମାସରେ ପକ୍ଷ ହେଲେ ତେରଦନ । ପକ୍ଷଗ୍ରାସେ ବ୍ୟକ୍ତ
ସୁଙ୍କା ଲଭେ ଗ୍ରନମାନ ।। ସର୍ବନାଶ ଅମଙ୍ଗଳ ନାନାରୋଗ ହୋଇ,
ହାହାକାର ଶବଦ ଜଗତେ ପ୍ରକାଶଇ ।। ପ୍ରାଣୀମାନେ ଦନାଶନ୍ତୁ ଅଇ
ସ୍ୱହଁ ସ୍ୱହଁ । ଦୁର୍ଭିକ୍ଷ ହୋଇଲେ ସୁଖ ମିଳବଟି କାହୁଁ ।। ନନହୁଁ
ହିଂସା ଅହଙ୍କାର କଲେ ଦୁର । ସେ କାଳେ ରହିବ ବର୍ଣ୍ଣି ଛାତ୍ରେ
ହେତୁକର ।।

ଶୟନ ଉତ୍ଥାନ ପାର୍ଶ୍ୱମୋଡ଼ା, ତାର ମଧ୍ୟ ଗ୍ରାମ ଛଡ଼ା ।
ଦୁଇ ପୁତ୍ରଙ୍କର ଜନ୍ମ ତିଥି, ଅଷ୍ଟମୀ ନବମୀ ପ୍ରଶସ୍ତ ଦୋଷି ।
ପାଗଳ ଚଉଦ ପାଗଳ ଆଠ, ଏହା ଜାଣିକରି ସମସ୍ତ କାଠ ।୪୧।

ଦେବଶୟନ ଉତ୍ଥାନ ଦେନ ପୂର୍ଣ୍ଣିମାରେ । ପାର୍ଶ୍ୱ ଏକାଦଶୀ
ଶୁଣି ଭୌମୈକାଦଶୀରେ ।। ହରି ଜନ୍ମାଷ୍ଟମୀ ରାମନବମୀ ସେ ଦୁଇ
ଶିବ ଚତୁର୍ଦ୍ଦଶୀ ମହାଷ୍ଟମୀ ଆଦ ସେହ ।। ଏ ଦନମାନଙ୍କେ ପ୍ରାଣୀ
ହୋଇ ନିଷ୍ଠାପର । ଧର୍ମପଥେ ମନ୍ତଦେଇ ଚିତ୍ତ କର ସ୍ଥିର ।

ଉପବାସ କରି ଯେହୁ ଗର୍ବ ନ କରନ୍ତି । ଜନ୍ମାନ୍ତରେ ବହୁ ସୁଖ
ଫଳ ସେ ଲଭନ୍ତି । ଏ ନିୟମ ମାନି ସର୍ବ ପ୍ରାଣୀମାନେ ଚଳ ।
ନିଶ୍ଚୟ ପ୍ରବେଶ ହେବ ଅମର ମଣ୍ଡଳ । ଜୀବ ଥିବା ଯାଏ ଜରା
ବ୍ୟାଧି ନ ଗ୍ରାସିବ । ଖନାର ବଚନ ଏହୁ ଅନ୍ୟଥା ନୋହିବ ।
ସକଳ ଜନମାନଙ୍କ ହିତ କାମନାରେ । ଖନା ବଚନକୁ କହିଲଇଁ
ପ୍ରକୃତରେ ।। ସୁଜ୍ଞଜନମାନେ ମୋର ଦୋଷ ନ ଧରିବ । ଗନ-
ଲେହିଜ ବଲ୍ଲଭଙ୍କର ସୂକ୍ଷ୍ମ ହିବ ।। ଦ୍ୱିତୀୟ ଅଧ୍ୟାୟ ପୂର୍ଣ୍ଣ ହେଲା ଏ
ସ୍ଥାନରେ । କହନ୍ତି ମଧୁସୂଦନ ହରଷ ମନରେ ।।

ଇତି ଦ୍ୱିତୀୟୋଽଧ୍ୟାୟଃ ।

# ତୃତୀୟ ଅଧ୍ୟାୟ

## ଯାତ୍ରା ନିୟମ

ମଙ୍ଗଳବାର, ବୁଧ ପାହାନ୍ତ, ଯେଣେ ଇଚ୍ଛାକଲେ ତେଣେ ଯାଆନ୍ତ ।

ମଙ୍ଗଳବାର ରଜନୀ ପାହି ଯାଉଥିବ । ବୁଧବାର ପ୍ରଭାତ ଯେ ହୋଇ ଆସୁଥିବ ॥ ମଧ୍ୟରେ ମଙ୍ଗଳବାର ନୁହେଁ ବୁଧବାର । ଏମନ୍ତ ସମୟ ଦେଖି ଅନୁକୂଳ କର ॥ ତିଥି ନକ୍ଷତ୍ର ଚନ୍ଦ୍ରମା କିଛି ନ ଖୋଜିବ । କେବଳ ମନ ଦୃଢ଼ରେ ଯାତ୍ରା ଆରମ୍ଭିବ ॥ ସକଳ କାର୍ଯ୍ୟରେ ସିଦ୍ଧି ଲଭିବ ନିଶ୍ଚୟ । ବାଞ୍ଛା ପୂର୍ଣ୍ଣ ହେବ ତହିଁ ନ କର ସଂଶୟ ॥ ଏ ସମସ୍ତେ ସର୍ବଜନ ଅନୁକୂଳ କର । ଖନା ବୋଲେ କେତେବେଳେ ନୋହିବ ବିଫଳ । ୧ ।

ରବି ଗୁରୁ, ମଙ୍ଗଳ ଉଷା, ଆଉ ସବୁ ଫସରଫସା । ୨ ।

ରବିବାର ଗୁରୁବାର ମଙ୍ଗଳବାର, ଏ ତିନେ ପ୍ରଶସ୍ତ ଏକା ଅଟେ ଉଷାକାଳ ॥ ଅନ୍ୟକାଳେ ନ ଲୋଡ଼ଇ ଯାତ୍ରା ଆରମ୍ଭିଲେ । ନିଶ୍ଚେ ସଫଳ ହୁଅଇ ଏହା ଖନା ବୋଲେ । ୨ ।

## ଉଷା ସମୟ ନିରୂପଣ

ଡାକେ ପକ୍ଷୀ ନଛାଡ଼େ ବସା, ଉଡ଼ିବ ସେ ଭକ୍ଷିବାର ଆଶା । ବସାକୁ ଫେରଇ ନପାଇ ଦିଗ, ଖନା କହେ ତାକ ସେହିଟି ଉଷା । ଉଡ଼ ପକ୍ଷୀ ନଖାଏ ଯେବେ, ଧେନୁବନେ କର୍ମୀ ନ ଯାଅ ଯେବେ ।

ପକ୍ଷୀମାନେ ଯେବେ ରଜନୀ ଶେଷ କାଳରେ । ନିଜ ବସାରେ ବସିଥାଆନ୍ତି ଆନନ୍ଦରେ । ଉଡ଼ିବାକୁ ବଳାଇଣ ଥାନ୍ତି ନିଜମତି । ମାତ୍ର ଦିଗ ନିର୍ମଳ ନୁହନ୍ତେ କରି ଭ୍ରାନ୍ତି । ନ ଉଡ଼ିଣ ଭକ୍ଷିବାକୁ ବଳାନ୍ତି ମାନସ । ନ ମିଳଇ ଅନ୍ଧକାର ଯୋଗେ ଦଶଦିଗ ॥ ଉଷା-କାଳ ବୋଲିଣ ଜାଣିବ ସେ ବେଳକୁ । ଏ ଯୋଗରେ ଯାତ୍ରା କଲେ

ଲଭ ସୁଫଳକୁ ॥ ଧନମାନ ଯଶ ଆଉ ଲଭିବ ନିଶ୍ଚିତ । ମନୋରଥ ସିଦ୍ଧି ସବ କର୍ମ ସଙ୍ଗତ ॥ ପକ୍ଷୀ ଉଡ଼େ ଯେବେ ସେତୁ ନ ପାଏ ଆହାର । ତଡ଼ବଗ ବସୁଥାଇ ଅଲ୍ପେ ଅନ୍ଧକାର ॥ ଏମନ୍ତ ବେଳରେ ଶୀଘ୍ର କର ଯାତ୍ରା ବିଧି । ଖନା କହେ ନିଶ୍ଚୟ ହେବ କାର୍ଯ୍ୟସିଦ୍ଧି ॥

## ଯାତ୍ରାର ଶୁଭ ଲକ୍ଷଣ

ବାମେ ଥାଏ ଶିଆଳ ମଢ଼ା, କୁମ୍ଭ ଘୋଡ଼ା ଅଜା ଘୋଡ଼ା ।
ଦକ୍ଷିଣେ ଗୋରୁ ମୃଗଦ୍ୱିଜ, ଶୁଭ ଚନ୍ଦ୍ର ମନରେ ହେଜ ।
ନକୁଳ ଶୁଭ ସବୁ ପାଖ, ଗୋରୁ ପୃଷ୍ଠେ କାକ ଦେଖ ।
ଖନା କହେ ଶୁଭ ଫଳ, ଯାଇ ଅଟେ ଅନୁକୂଳ । ୪ ।

ଯାତ୍ରାର ଶୁଭ ଲକ୍ଷଣ ସୁଜ୍ଞଜନେ ଶୁଣ । ଗୀତରେ ବୁଝାଇ ତାହା କହୁଅଛୁ ପୁଣ । ଶୃଗାଳ ଦେଖିବ ବାମ ପାର୍ଶ୍ୱରେ ତର୍ହି । ମୃତ ପ୍ରାଣୀକୁ ମାନବେ ନେଉଥିବେ ବହି ॥ କି ଅବା ଜଳପୂର୍ଣ୍ଣ କଳସ ବୈଦ୍ୟଯୋଗେ । ନୟନ ଗୋଚର ହେବ ନିଜ ବାମଭାଗେ । ଘୋଟକ କି ଅବା ମେଷ ବାମରେ ରହନ୍ତି । ଶୁଭଫଳ ହୁଏ ମନେ ନ କରଣ ଭ୍ରାନ୍ତି ॥ ଦକ୍ଷିଣ ପାର୍ଶ୍ୱେ କେବେ ଥିବେ ଧେନୁଗଣ । ମୃଗ କି ଅବା ବ୍ରାହ୍ମଣ ଥିଲେ ଶୁଭ ଜାଣ ॥ ବାମେ କିମ୍ବା ଦକ୍ଷିଣରେ ଦେଖିଲେ ନକୁଳ । କିଅବା ଗୋ ପୃଷ୍ଠେ କାକେ ଦେଖିବ ସେ ବେଳ ॥ ସୁଫଳ ଫଳଇ ନିଶ୍ଚେ ସେ ଯାତ୍ରାରେ ପୁଣ । ଖନା କହେ ସୁଖେ ଗମ ସୁବିବେକୀ ଗଣ । ୪ ।

## ଯାତ୍ରାର ଅଶୁଭ ଲକ୍ଷଣ

ମାର୍ଜାର ସମର ମଡ଼ା ଘୋର, ଖସାଖସ ଯେବେ ସହୋଦର ।
ନଜର ପୁରବଣ୍ଟ ଉପୋଷଣ୍ଟି, ଜନମାର ଦୃଃଖେ ଥିଲେ ମଣ୍ଡ ।
ସୂତକ ମୃତକ ଆଉ ଦୋଷ, ଅସମୟ ବୃଷ୍ଟି ନମିଳେ ବାସ ।
ଖନା ଡାକ କହେ ଶୁଣହେ ଭାଇ, ଏମନ୍ତ ଘଟିଲେ ନଯିବ କାହିଁ ।

ଶୁଣ ହେ ସୁଜନ ଜନେ ମନ ଆନନ୍ଦରେ ଯାହାର ଅଶୁଭ କଥା କହିବା ଗୀତରେ ॥ ଅଗ୍ରସ୍ଥ କରିବ ଯାତ୍ରା ଯେବଣ ବେଳରେ ମାର୍ଜାରଙ୍କ କଳହ ଦେଖିଲେ ନୟନରେ ॥ ଲୁଣ୍ଠନ୍ତ୍ର ମଧ୍ୟେ କଳହ ଅଗ୍ରୁଥିବ ହୋଇ । ନିଜଭାର୍ଯ୍ୟା ରଜସ୍ୱଳା ଯେବେ ହୋଇ ଥାଇ । ନିଜର ଜନନୀ ଜାୟା ଗୁରୁଜନ ସଙ୍ଗ । ଗୃହ ମଧ୍ୟେ ଯେବେ ମନ ନ ଥାଏ ଉତ୍ତମ । ସୂତକ ମୃତକ ଆଦି ଅଶୌଚ ମଧ୍ୟରେ । ପ୍ରକାଳରେ ବୃଷ୍ଟି ହୁଏ ଯେବେ ସେ କାଳରେ । ପିନ୍ଧିବାର ବସ୍ତ୍ର ଯଦି ଖୋଜିଲେ ନ ମିଳେ । ଜାଣିଥିବ ଅମଙ୍ଗଳ ଘଟିବ କପାଳେ । ଏସବୁ ଘଟିଲେ କେବେ ଯାତ୍ରା ନ କରିବ । ନ ମାନି ଗମିଲେ ମନ୍ଦ ଫଳକୁ ଭୋଗିବ ।୫।

ଶୂନ୍ୟ କଳସ ଶୁଖିଲା ନାଆ, ଶୁଖିଲ ଜାଗାରେ ଡାକଇ କୁଆ
ଦେଖିବ ଯଦି ମାଛର ଧୋପା, ଆଗକୁ ପାଦ ନ ଦେବା ବାପା ॥
ଖନା ଡାକକହେ ନଯିବୁ ଚେଲା, ଯଦି ଦେଖୁଥିବୁ ସମ୍ମୁଖେ ତେଲ ।

ଯାତ୍ରା କରିବାର ବେଳେ ଶୂନ୍ୟ କଳସକୁ । ନେତ୍ରରେ ଦେଖିବ ଯେବେ ପ୍ରଚ୍ଛନ୍ନ ତାହାକୁ ॥ ଜଳ ଶୁଖିଯାଇଛି ଥିବା ନୌକା ଯେବେ ଦେଖି । ଶୁଷ୍କ ସ୍ଥାନେ ବସି ରହୁଥିବ କାକପକ୍ଷୀ । ମାଛୁଆ ଲୋକ କି ଧୋବା ରଜକ ତେଲିକ ଦେଖିଲେ । ଅଶୁଭ ହୁଅଇ ଯାତ୍ରା । ଜାଣିଥାଅ ଭଲେ । ଏହି ସବୁ ନେତ୍ରେ ଯଦି ଦେଖିବ ହେ ଭାଇ । ଗୃହକୁ ଫେରି ଆସିବ ବିଳମ୍ବ ନହୋଇ ॥ ନ ମାନିଣ ଗମନ କରିବ ଯେବେ ବଳେ । ଖନା କହେ ନିଶ୍ଚେ ଅମଙ୍ଗଳ ଫଳେ ଫଳେ ।୬।

## ବିପରୀତ ଦୃଷ୍ଟେ ଯାତ୍ରା ଫଳାଫଳ

ଉଇଠାରୁ ଶୂନ୍ୟ ଭଲ ଯଦି ଉଡିବାକୁ ଯାଏ ।
ଆଗଠାରୁ ପଛ ଭଲ ମାଆ ଯେବେ ଡାକଏ ।

ମସ୍ତଠାରୁ ଜାଙ୍ଘନ୍ତା ଭଲ ମଲବାଙ୍କୁ ଯେବେ ଥାଏ ।
ତାଆଁଠାରୁ ଡାହାଣ ଭଲ ଫେଣ ଯଦି ସ୍ବପ୍ନେ ।।
ବନ୍ଧଠାରୁ ଖୋଳ୍ନ ଭଲ ମୁଣ୍ଡ ଟେକ ଶୁଣ୍ଢିଲେ ।
ବସିବା ଠାରୁ ଜାଣିବା ଭଲ କାନ୍ଦେ ଯେବେ ବାଆଁରେ ।୭।

ଯାତ୍ରାକାଳେ ଶୂନ୍ୟ କଳସକୁ କେହି ନେଇ । ଯାଉଥାଏ ଯେବେ ଜଳ ଆଣିବାର ପାଇଁ ।। ତେବେ ଶୁଭଫଳ ହୁଏ ଜାଣିବ ନିଶ୍ଚୟ । ଗମନ କରିବ ମନେ ନ କରି ସଂଶୟ । ପଛରେ ଡାକିବା ଦିନ ଅଶୁଭ ଅଟଇ । ନିଜ ମାତା ଯେବେ ଡାକେ ଶୁଭ ପ୍ରକାଶଇ । ନିକଟ ମୃତ୍ୟୁ କରିବା ଜୀବନ୍ତ ପ୍ରାଣୀଙ୍କ । ଯାତ୍ରାକାଳେ ଯେବେ ତାକୁ ନୟନରେ ଦେଖି ।। ଶବ ଦର୍ଶନରୁ ଅତି ଶୁଭ ବୋଲି ଜାଣ । ସକାଳ କାର୍ଯ୍ୟ ସୁଫଳ ହୁଅଇ ପ୍ରମାଣ । ବାମପାର୍ଶ୍ବେ ଶୃଗାଳ ଶୁଭ ଦିନ ଅଟଇ । ତାହାଠାରୁ ଶୁଭ ଦକ୍ଷପାର୍ଶ୍ବେ ଯେବେ ତନ୍ତି । ପଛକୁ ଶୁଣ୍ଢିଣ ଯେବେ ପଳାଏ ଚଞ୍ଚଳ । ତା ହେଲେ ଅତ୍ୟନ୍ତ ଶୁଭ ବୋଲି ଦେହୁକର । ବନ୍ଧାଗୋରୁ ଠାରୁ ଖୋଲ୍ନ ଗୋରୁ ଅଟେ ଶୁଭ । ମୁଣ୍ଡଟେକ ଶୁଣ୍ଢିଲେ ହୋଇବ ବହୁଲାଭ । ଯାତ୍ରାକାଳେ ଉଚହାସ୍ୟ ଶବଦ ଶୁଣିଲେ । ଶୁଭ ହୁଏ ବୋଲି ଶୁଣିଛୁ ଗ୍ରନ୍ଥରେ ।। ତାହାଠାରୁ ଶୁଭ ବା ପାର୍ଶ୍ବରେ ରୋଦନ ଯାତ୍ରାକାଳେ କର୍ଣ୍ଣକୁ ଶୁଭିଲେ ଧନ ଧନ ।। ଅତ୍ୟନ୍ତ ଶୁଭ ହୁଅଇ ସେହି ଅନୁକୂଳେ । ଧନମାନ ଯଶ ସମ୍ପଦ ଅତହେଲେ ।। ପ୍ରାଣୀଙ୍କ ହିତରେ ଏହା ଖନା କହିଛନ୍ତି । ସୁଜ୍ଞଜନମାନେ ଏହା ଚିତ୍ତେ ଥାପ ଚନ୍ତି । ୭ ।

## ସଙ୍କେତ ଦ୍ଵାରା ଯାତ୍ରା ସମୟ ନିର୍ଣ୍ଣୟ

ଘେନ ତ୍ରୟୋଦଶାଙ୍କୁ କାଠ । ସୂର୍ଯ୍ୟ ମଣ୍ଡଳେ ଦିଅ ଦୃଷ୍ଟି । ରବିରେ କୋଡ଼ିଏ ସୋମେ ଷୋହଳ ପଞ୍ଚଦଶାଙ୍କୁଳ ମଙ୍ଗଳେ ଭଲ । ବୁଧେ ଏକାଦଶ ଗୁରୁବାର, ଶୁକ୍ରେ ଚତୁର୍ଦ୍ଦଶ ଶନିରେ ତେର । ଛାୟା ଟିକେ ଟିକେ ଘଟଇ ଯେବେ, ଅଷ୍ଟଗୁଣେ ଲାଭ ହୁଅଇ ତେବେ

ସକାଶ ସ୍ଥାନରେ କାଠି ଗୋଟି ଯୋଡ଼ିବ । ସୂର୍ଯ୍ୟ କିରଣରେ ନେଇ ସତନେ ପୋତିବ । ଭୂମିପରେ ବାହାରକୁ ବାରଅଙ୍ଗୁଳ ଥିବ । ତାହାର ଛାୟାକୁ ଦେଖି ଗଣନା କରିବ । ରବିବାର ଯେବେ ହୋଇ ଥିବ ସେଦିନ । ସେ ଛାୟା ବିଂଶ ଅଙ୍ଗୁଳରେ କରିବ ଗମନ । ସୋମବାରେ ଷୋଳ ଅଙ୍ଗୁଳରେ ଯାତ୍ରା କର । ମଙ୍ଗଳବାରେ ନମିବ ପଶ୍ଚିମପଦର । ବୁଧବାରେ ଏଗାର ଅଙ୍ଗୁଳ ଛାୟା ହେଲେ । ଗମନ କରିବ ଭ୍ରାନ୍ତ ନ ଲଖି ଚିତ୍ତରେ ॥ ଗୁରୁବାରେ ହେଲେ ଛାୟା ବାର ଅଙ୍ଗୁଳରେ । ଶୁକ୍ରବାରେ ଚତୁର୍ଦ୍ଦଶ ଅଙ୍ଗୁଳ ଛାୟାରେ ॥ ଶନିବାରେ ତେର ଅଙ୍ଗୁଳ ଦେଖିକରେ ଛାଇ । ହୋଇଥିଲେ ଯାତ୍ରା ଆରମ୍ଭିବ ଆହେ ଭାଇ । ତିଥିବାର ନକ୍ଷତ୍ରାଦି କିଛି ନ ଖୋଜିବ । କେବଳ ଏ ଛାୟାମଣି ଗମନ କରିବ ॥ ଶୁଭଫଳ ସବୁପଡ଼ ତହିଁରେ ହୁଅଇ । ଧନମାନ ଯଶଆଦି ଚଞ୍ଚଳ ମିଳଇ ॥ ଯାତ୍ରାବେଳେ ଯେବେ ଛିଙ୍କ ପଡ଼ଇ ଅକାଳ । ଅଥବା ପଲ୍ଲୀପତନ ହୁଅଇ ତତ୍କାଳ । ମହା ଶୁଭଫଳ ବୋଲି ଜାଣିବ ନିଶ୍ଚିତ । ଲାଭ ଦେବ ଅଷ୍ଟଗୁଣେ ମହାସୌଖ୍ୟ ଜାତ । ଏମନ୍ତବେଳେ ଦେଖି ଯେବେ ଯାତ୍ରା ଆଚରିବ । ଖନା ବୋଲେ ତତ୍ତ୍ୱ ଅର୍ଥ ଆନନ୍ଦେ ରହିବ । ୮ ।

## କାକଦ୍ୱାରା ଯାତ୍ରାର ଶୁଭ ଲକ୍ଷଣ ନିର୍ଣ୍ଣୟ

ଗୋରୁପୃଷ୍ଠେ ଯାତ୍ରାକାଳେ, ଯଦି କାକ ବସେ ଭଲେ
ଧନରତ୍ନ ବହୁ ମିଳେ, କାର୍ଯ୍ୟ ଶୁଭଫଳ ଫଳେ । ୯ ।

ଯାତ୍ରା ସମୟରେ କାକ ଗୋରୁ ପୃଷ୍ଠେ ବସି । ମିଷ୍ଟରବ କଲେ ଶୁଭଯୋଗ ଶୀଘ୍ରଆସି ॥ ସେ ପ୍ରାଣୀକ ପ୍ରବେଶ ହୁଅଇ ବଳେବଳେ । ଐଶ୍ୱର୍ଯ୍ୟ ଧନ ରତ୍ନାଦି ପାଶେ ଆସି ମିଳେ ॥ ଶୁଭଫଳ ଫଳଇ ତା ଛାର୍ଯ୍ୟରେ ଭଞ୍ଜନ, ଖନ ବାକ୍ୟମିଥ୍ୟା ବୋଲି ମନରେ ନ ଭାଳ ।୯।

## କାକଦ୍ୱାରା ଯାତ୍ରାର ଅଶୁଭ ଲକ୍ଷଣ ନିର୍ଣ୍ଣୟ

ଗୋ ପୃଚ୍ଛେ କାକ ବସେ ଯେବେ, ସର୍ପଦଂଶନ ହୋଇଥିବେ ।
ମସ୍ତକପୃଷ୍ଠେ ଯେବେ ବସେ, ଗମିତା ବ୍ୟକ୍ତିର ପ୍ରାଣ ନାଶେ ।୧୦।

ଯାତ୍ରାକାଳେ ଗୋରୁପୃଚ୍ଛେ କାକ ବସିଥିବେ । ଗମିତା ବ୍ୟକ୍ତି ଯଦ୍ୟପି ଦେଖିଲେ ଯାତ୍ରାରେ । ସର୍ପେ ସର୍ପଦଂଶନ ହୋଇବଟି ଜାଣ । ମନ୍ତ୍ର ନା ବ ମନ୍ତ୍ର ସର୍ପଦଂଶନ ପ୍ରମାଣ । ମସ୍ତକ ପୃଷ୍ଠରେ କାକ ବସିଥିବ ଯେବେ । ସଦ୍ୟ ଜ୍ୱର ହୋଇ ମୃତ୍ୟୁଦଶା ଘଟେ ତେବେ । ଏ ବେଳ ଯୋଗକୁ ଜାଣି ସ୍ଥାନେ ଯେବଦ । ଅନୁକୂଳ ଗର୍ଜି ଜନେ ସାବଧାନ ହେବ ॥ ଗୃହରୁ ବାହାରକୁ ନ ଯିବ ଏ ଯୋଗରେ । ଶତ୍ରୁ ପ୍ରବେଶ କରିବ ଶ୍ରୀହରି ନାମରେ ॥ ତାହା ହେଲେ ଏ ବଣ୍ଡରୁ ଲଭିବ ନିସ୍ତାର । ଖନାର ବଚନ ସୁଜ୍ଞଜନେ ଦେଖୁକର । ୧୦ ।

## ତିଥି ଓ ବାରାଦି ଗଣନା କ୍ରମେ ଯାତ୍ରାର ଶୁଭାଶୁଭ ନିର୍ଣ୍ଣୟ

ତିଥିବାର ସ୍ୱନକ୍ଷତ୍ର ମାସରେ ଯେତେଦିନ
ଏକତ୍ର କରି ସାତରେ କରିବ ହରଣ
ଏକେ ଶୂନ୍ୟ ଦ୍ୱୟେ ଲାଭ ତିନ ଶତ୍ରୁକ୍ଷୟ,
ଚତୁର୍ଥରେ ସର୍ବସିଦ୍ଧି ପଞ୍ଚମେ ସଂଶୟ ।
ଷଷ୍ଠେ ମୃତ୍ୟୁ ହେଲେ ପାଏ ବହୁ ଦୁଃଖ ।
ଖନା ବୋଲେ ଏ ଯାତ୍ରାର ନାହିଁ ତେବେ ସୁଖ । ୧୧ ।

ଯାତ୍ରା କରିବାକୁ ଯେଉଁଦିନ ସ୍ଥିରଥିବ । ସେ ଦିନର ବାର ସଙ୍ଗେ ଯୋଗିବ । ଆପଣାର ଜନ୍ମ ନକ୍ଷତ୍ର ସଂଖ୍ୟାକୁ ନେଇ ତାହାର ତଳକୁ ଥୁଆ ହରଷିତ ହୋଇ । ମାସ ସଂଖ୍ୟା ପୂର୍ଣମାସ ଯେତେଦିନହୋଇ । ଏକତ୍ର ମିଶାଇ ସାତଦ୍ୱାରାହରଣେଇ । ଲବ୍ଧ

ଅଙ୍କରେ ଭାଗ୍ କରୁ ତର ନାର । ଅବଶିଷ୍ଟ ଅଙ୍କକୁ ତତ୍ତ୍ୱରେ ଦେଖ
କର ॥ ଏକ ରହିଲେ ସକଳ ଶୁଭ ତେ ହୁଅଇ । ଦୁଇରେ ପ୍ରଚୁର
ଧନଲାଭ ଜାଣ ତହିଁ ॥ ତିନ ରହଇ ଯଦ୍ୟପି ହୁଏ ଶତ୍ରୁ କ୍ଷୟ ।
ସ୍ୱଳ୍ପରେ ସକଳ କାର୍ଯ୍ୟ ସିଦ୍ଧ ଯେ ନିଶ୍ଚୟ ॥ ପାଞ୍ଚ ଯେବେ ଅବଶେଷ
ରହିବୁ ନିଶ୍ଚିତ । ଅବଶ୍ୟ ଯେ କାର୍ଯ୍ୟ ହୁଅଇ ସଂଶୟ ଜାତ ॥
ତେବେ ଶୁଭ ବୃତ୍ତି ଅଳ୍ପ ଯେ ହୁଅଇ । ଷଷ୍ଠ ରହିଲେ ମରଣ
ଦଶା ପ୍ରବେଶଇ ॥ ଶୂନ୍ୟ ରହିଲେ ବହୁତ ଦୁଃଖ ହୁଏ ଜାତ ।
ଖନାର ବଚନ ମିଥ୍ୟା ନୁହେଁ କହାଗଲା ।

ଉଦାହରଣ ଯଥା—

କୌଣସି ବ୍ୟକ୍ତି ବିଦେଶ ଯାତ୍ରାର ଫଳ ବିଚାର ଶୁଭାଶୁଭ
ଜାଣିବାକୁ ପଞ୍ଜିକାରେ ଦେଖିଲା, ସେଦିନ ତିଥି ତ୍ରୟୋଦଶୀ,
ମାର୍ଗଶିର ବଦି, ରବିବାର ଅଟେ ॥

ନ୍ୟାସ—

| | | |
|---|---|---|
| ତିଥି 'ତ୍ରୟୋଦଶୀ'···ସଂଖ୍ୟା | ········· | ୧୩ |
| ବାର 'ରବିବାର' | ” ········· | ୧ |
| ନିଜର ଜନ୍ମ ନକ୍ଷତ୍ର 'ଅନୁରାଧା' | ········· | ୧୭ |
| ମାସ 'ମାର୍ଗଶିର' | ········· | ୮ |
| ପକ୍ଷ 'ମାର୍ଗଶୀର୍ଷ ବଦି' | ········· | ୫ |
| | ମୋଟ— | ୪୪ |

୪୪ ÷ ୭ = ଲବ୍ଧ ଅବଶିଷ୍ଟାଂଶ ।

ଏଥିର ଗଣାଗଲା ଅବଶିଷ୍ଟ ୨ ରହିବାରୁ ଯାତ୍ରା କରିବା
ବ୍ୟକ୍ତିର ବହୁତ ଧନ ଲାଭହେବ ।

ଯେ କୌଣସି ଦିନରେ ଯାତ୍ରା କରିବାକୁ ଇଚ୍ଛା କରିଲେ ଉପରୋକ୍ତ ନିୟମାନୁଯାୟୀ ଶୁଭାଶୁଭ ଫଳ । ସମସ୍ତ ସବୁଦିନରେ ଜାଣି ପାରିବ । ଇତି ।

## ପ୍ରଶ୍ନ ଦ୍ୱାରା ଶୁଭାଶୁଭ ନିର୍ଣ୍ଣୟ

ସାତ ପାଞ୍ଚ ତିନ କୁଶଳ ବାତ, ନବସ୍ୱ ଏକ ହାତେ ହାତ ।
ଛ କରିବ ଛନେ ଚନେ, କାର୍ଯ୍ୟନାଶ ଦୁଇ ଆଠ । ୧୨ ।

ଯେଉଁ ବ୍ୟକ୍ତି ପ୍ରଶ୍ନପଚାରି ଗଣକଙ୍କୁ । ତାର ନାମାକ୍ଷର ସଂଖ୍ୟା ହେଲିବ ମନକୁ ।। ଶ୍ରୋତା ବା ଉତ୍ତର କର୍ତ୍ତାଙ୍କର ନାମାକ୍ଷର । ସଂଖ୍ୟାକୁ ତାର ସଙ୍ଗେ ନେଇ ଯୋଗକର ।। ସେଦିନ ନକ୍ଷତ୍ର ତିଥି ବାର ମାସ, ଅଙ୍କ । ସବୁ ଏକତ୍ର କରିଣ ଯେତେ ହେଲା ଦେଖ ।। ଦଶଦ୍ୱାରା ହରଣ କରିବ ତତ୍କାଳ । ଲବ୍ଧ ଫଳରେ କିଛି ନାହିଁ ଦରକାର ।। ଅବଶେଷ ଯେ ରହିବ ତାହାକୁ ଘେନଣ । ବୁଝିବ ସକଳ ଶୁଭାଶୁଭ ଫଳମାନ ।। ଯେବେ ଏକ ସଂଖ୍ୟା ନ ରହଇ ଅବଶେଷ । ପ୍ରତ୍ୟକ୍ଷରେ ଶୁଭ ଫଳ ଅଟଇ ବିଶେଷ ।। ତିନ ପାଞ୍ଚ ସାତ ଯେଣେ ରହଇ ନିଶ୍ଚୟ । ଶୁଭ ସମାଚାର ମନେ ନକର ସଂଶୟ । ଦୁଇ ସଂଖ୍ୟା ଆଠ ଥିଲେ କାର୍ଯ୍ୟ ନାଶ ହୋଇ । ଚାରି ଛଅ ରହିଲେ ଯେ ବିଫଳ ଅଟଇ ।। ଶୂନ୍ୟେ ସର୍ବନାଶ ବୋଲି ଜାଣିବ ନିକର । ଖନା ବୋଲେ ଏହା ବୁଝି ସର୍ବ କର୍ମକର ।। ଉଦାହରଣ ଯଥା—

ବନମାଳୀ ନାମରେ ଜଣେ ବ୍ୟକ୍ତି ଚନ୍ଦ୍ରଧର ଅବଧାନଙ୍କ ନିକଟକୁ ଯାଇ ପଚାରିଲା, ମୋର ମନସ୍ଥ କର୍ମରେ ଶୁଭ ହେବ କି ନାହିଁ ? ତହୁଁ ଅବଧାନେ ନିମ୍ନଲିଖିତ ନିୟମାନୁଯାୟୀ ପ୍ରଶ୍ନ ବୁଝି ଫଳ କହିଲେ—

ଝସାଢ—

| | |
|---|---|
| ବରମାଳ [ ଅକ୍ଷର ସଂଖ୍ୟା ] | ୪ |
| ଚନ୍ଦ୍ରଧର [ " ] | ୪ |
| ଆଷାଢ ମାସ ସଂଖ୍ୟା | ୩ |
| ଦ୍ୱିତୀୟା ତିଥି " | ୨ |
| ରୋହିଣୀ ନକ୍ଷତ୍ର " | ୪ |
| ବୁଧବାର " | ୪ |
| ମୋଟ— | ୨୧ |

୨୧ ÷ ୧୦ = ଲବ୍ଧଅଂଶ ୧

ଏଥିରୁ ଜଣାଗଲା ଅବଶିଷ୍ଟ ୧ ରହିବାରୁ ବିଶେଷ ଶୁଭଫଳ ହେବ । ଉକ୍ତ ପ୍ରକ୍ରିୟାନୁସାରେ ଯେ କୌଣସି ବିଷୟରେ ଶୁଭାଶୁଭ ନିରୂପଣ କରିବାକୁ ହେବ । ଇତି ।

## ଦମ୍ପତି ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ଅଗ୍ରପଶ୍ଚାତ ମୃତ୍ୟୁ ନିରୂପଣ

ଅକ୍ଷର ଦ୍ୱିଗୁଣ ଚଉଠ ଗୁଣ ମାତ୍ରା, ନାମେ ନାମେ କର ସମତା ।
ତିନ ଦେଇ ହରଆଣ, ତହୁଁ ମର ବଞ୍ଚା ଜାଣ ।
ଏକେ ଶୂନ୍ୟ ମରଇ ପତି, ଦୁଇ ରହିଲେ ମରେ ଯୁବତୀ । ୧୩ ।

ଶୁଣ ହେ ସୁଜନମାନେ ଏକଚିତ୍ତ ହୋଇ । ଦମ୍ପତିଙ୍କ ଆଗପଛ ମୃତ୍ୟୁ ଦେଖା କହୁ ॥ ସେ ଦେହପ୍ରାଣୀଙ୍କ ନାମାକ୍ଷର ଯେତେହେବ । ତାହାକୁ ଦ୍ୱିଗୁଣକରି ଯତନେ ରଖିବ । ପୁଣି ସେ ଅକ୍ଷର ମଧ୍ୟେ ଯେତେମାତ୍ରା । ନିରେଖି ଗଣିବ ତାକୁ ଚୌଗୁଣ କରିବ ॥ ଦୁଇ ଗୁଣ ଚଉଗୁଣ କରିବା ଅଙ୍କକୁ । ଏକତ୍ର ଯୋଗ କରିବ ତତ୍କାଳେ ତାହାକୁ । ଯେତେହେବ ତାକୁ ତିନ ଦେଇଣ ହରିବ । ଅବଶେଷକୁ

ତେଷିଣ ଟଳ ଭସ୍ମଭବ ।। ଏକ କମ୍ବା ଶୂନ୍ୟ ଯବ ଅବଶିଷ୍ଟ ରହ୍ଵ ।
ତେବେ ସ୍ୱାମୀ ମୃତ୍ୟୁ ଆଗ ବୁଝିବ ହେ । ଦୁଇ ରହିଲେ
ସୁବସ୍ତ ମରଇ ଆଗରେ । ଖନାର ବଚନ ଏହା ମନେ ରଖ
ଧରେ । ୧୩ ।

ଉଦାହରଣ ଯଥା—

କୌଣସି ପୁରୁଷର ନାମ ଭଗବାନ ଏବଂ ସ୍ତ୍ରୀର ନାମ ସ୍ୱନ,
ତେବେ ଏ ଦୁହିଁଙ୍କ ମଧ୍ୟରେ କିଏ ଆଗ ମରିବ ଜାଣିବ ।

ହିସାବ—ମତର ନାମ 'ଭଗବାନ' ଅକ୍ଷରସଂଖ୍ୟା ୪

ପତ୍ନୀର ନାମ ସ୍ୱନ' ,, ୨

ଉଭୟ ଅକ୍ଷର ମୋଟ ସଂଖ୍ୟା ୬

୬ × ୨ = ୧୨

ମତର ନାମ ମଧ୍ୟରେ କେବଳ 'ବ' ଥିବାରୁ ମାତ୍ରା ସଂଖ୍ୟା ୧

ପତ୍ନୀର ନାମ ମଧ୍ୟରେ କେବଳ 'ସ୍ୱ' ଥିବାରୁ ମାତ୍ରା ସଂଖ୍ୟା ୧

ଉଭୟଙ୍କର ମୋଟ ମାତ୍ରା ସଂଖ୍ୟା ୨

୨ × ୪ = ୮

ଉଭୟ ଅକ୍ଷର ଦ୍ୱିଗୁଣସଂଖ୍ୟା ୧୨ + ୮ = ୨୦ ÷ ୩ = ୬ ଲବ୍ଧ
୨ ଅବଶିଷ୍ଟାଂଶ । ଏଥିରୁ ସ୍ପଷ୍ଟ ଜଣାଗଲା ଅବଶିଷ୍ଟ ୨ ରହିବାରୁ
ଆଗ ପତ୍ନୀ [ସ୍ୱନ] ମୃତ୍ୟୁ ହେବ ।

ପାଠକେ ! ଉକ୍ତ ନିୟମାନୁଯାୟୀ ସମସ୍ତଙ୍କର ଅଗ୍ରପଶ୍ଚାତ୍
ନିର୍ଣ୍ଣୟ କରିବା ହେବେ । ଇତି ।

## ପରମାୟୁ ନିର୍ଣ୍ଣୟ

ଯେଉଁ ତିଥି ଯେଉଁ ବାର । ଜନ୍ମ ନକ୍ଷତ୍ର କର ସାର ।

ନ କର ଶୁଶୁର ମଣ୍ଡସ୍ଥାନ । ଫଳକୁ ଜାଣ ବାରଦନ । ୧୪ ।

ଶୁଣ ବନ୍ଧୁ ତାହା ଖନା କହୁଛି ବୁଝାଇ । ଭୂମରେ ପଡ଼ିବ ମନ

ଉମାଷ ଜମ୍ମାଇ । ସ୍ପଷ୍ଟ ସ୍ବବର ପରମାୟୁ ନିର୍ଣ୍ଣୟ ହେଉଅଛ । ଵାର ତଥି ଆଉ କହୁ ନିଵେଶ୍ଚି ନନମ୍ପକ । କେବଳ ଜନ୍ମ ନକ୍ଷତ୍ର ଅବଶେଷ ଧର । ତହିଁରୁ ପରମାୟୁ ନିରୂପଣ କର । ଯେତେ ଦଣ୍ଡ ଯେତେ ଲିତା ବାଡ ରହିଥିବ । ତାହାକୁ ଫଳ କରଣ ସତର୍କେ ରଖିବ ॥ ଫଳ ବୋଲହେନ୍ତ ଲିତା ବୋଲି ହେଉଛକର । ଫଳକୁ ଗୁଣବନ ବାର ଵରସ ଜକନ୍ତ ॥ ଯେତେକ ଫଳ ଥିବ ତେତେ ବାର ଦନ ଜାଣ । ତହିଁକ ବର୍ଷମାସାଦ ବୁଝିବ ସୁଜନ । ୧୦ ।

ଉଦାହରଣ ଯଥା—

କୌଣସି ବ୍ୟକ୍ତିର ଜନ୍ମସମ୍ବନ୍ଧୀ ନେବନ୍ଧୀ ନକ୍ଷତ୍ରରୁ ଅବଶିଷ୍ଟ ଥିଲା ଦ ୧୫ । ୨୪ ଲିତା, ତେବେ ତାର ପରମାୟୁ କେତେ ?

ପ୍ରସାବ—

୧ ଦଣ୍ଡକ ୬୦ ଫଳ ହେଲେ ଦ ୧୫ । ୨୪ ଫଳ ସେ କେତେ ?

୧୫ ଗୁଣନ ୬୦ = ୯୦୯ + ୨୪ = ୯୨୪ ଫଳ ବା ଲିତା ।

ପ୍ରାପ୍ତ ଫଳକୁ ପରମାୟୁ ୧୨ ଦିନ ଗୁଣାକରେ—

୯୨୪ × ୧୨ ଦିନ = ୧୧୦୮୮ ଦିନ ଅର୍ଥାତ୍ ବା ୩୦।୯।୨୮ ଦିନ

ଏଥିରୁ ଜଣାହେଲା ସେ ବ୍ୟକ୍ତିର ପରମାୟୁ ବ ୩୦।୯।୨୮ ଦିନପର୍ଯ୍ୟନ୍ତେ

ଶକକୁ ଦ୍ୱିଗୁଣ ଏକ ଘୁନ, ତଥିଵାର ନକ୍ଷତ୍ରଙ୍କରବ ଗଣନ । ଏକଶତ ଅଂଶେ ହରବକେନଇ, ଯେତେରହେ ତେତେ ପରମାୟୁ । ଜନ୍ମ ଶକାବ୍ଦକୁ ନଣି ଦ୍ୱିଗୁଣ କରିବ । ଯେତେ ହେବ ତଥି ମଧ୍ୟ ଏକ ଫେଡ଼ଦେବ, ତହୁଁ ଯେତେ ଅବଶିଷ୍ଟ ରହିବ ନକର । ତା ସଙ୍ଗେ ଯୋଗ କରିବ ଜନ୍ମ ତଥିତାର । ଆଉ ତା ସଙ୍ଗେ ଯୋଗ କରିବ ନକ୍ଷତ୍ର । ଏକଶତ ଅଂଶେ ତାକୁ ହରିବ ନସ୍ତୁତ । ଲବ୍ଧରେ କଛୁ ମତ ନାହିଁ ପ୍ରୟୋଜନ । ଅଂଶ ଯେ ରହିବ ସେହି ପରମାୟୁ ଜାଣ । ୧୫ ।

**ଉଦାହରଣ ଯଥା—**

କୌଣସି ବ୍ୟକ୍ତି ଯେବେ ଶକାବ୍ଦ ୧୮୧୧ ବୈଶାଖ ଶୁକ୍ଳପକ୍ଷ ତୃତୀୟା ରବିବାର ଅନୁରାଧା ନକ୍ଷତ୍ରରେ ଜନ୍ମ ହୋଇଥାଏ, ତେବେ ତାହାର ପରମାୟୁ କେତେ ?

ଉପାୟ—ଜନ୍ମ ଶକାବ୍ଦ··· ସଂଖ୍ୟା ୧୮୧୧

'ତିଥି 'ତୃତୀୟା'··· " ୩

ବାର ରବିବାର··· " ୧

ଜନ୍ମ ନକ୍ଷତ୍ର ଅନୁରାଧା " ୧୭

ଶକାବ୍ଦ ୧୮୧୧ ଗୁଣନ ୨ = ୩୬୪୨ − ୧ = ୩୬୪୧

୩୬୪୧ + ୩ = ୩୬୪୪ + ୧ = ୩୬୪୫ + ୧୭ = ୩୬୬୨

୩୬୬୨ ÷ ୬୦ = ୬୦ ଭାଗଫଳ, ଅବଶିଷ୍ଟାଂଶ ୬୨ ।

ଏଥିରୁ ଜଣା ହେଲା ସେ ବ୍ୟକ୍ତିର ପରମାୟୁ ୬୨ ବର୍ଷ ଅଟେ ପାଠକେ । ଉକ୍ତ ପ୍ରକ୍ରିୟାନୁସାରେ ସମସ୍ତଙ୍କ ପରମାୟୁ ନିର୍ଣ୍ଣୟ କରିବା ହେବେ । ଇତି ।

## ତିଥି ନିରୂପଣ

ଖାଲି ଗ୍ରଗଲ ବୃକ୍ଷେ ବୁଧ, ମିଥୁନେ ପୂରଏ ବେଦା ।
ସିଂହେ ବସୁ ଘର କ ଲଭେ, ଆଉ ପୂରଣ ଦଶେ ॥

ବର୍ଷ ଆରମ୍ଭ ଦିବସ ଥିବ ଯେଉଁ ତିଥି । ସେହିଦିନ ସେ ମାସର ତିଥିରେଣ ମତ । ଏକାଦ୍ଧ କରଣ ପୁଣି ତାହାର ସଙ୍ଗର । ବୈଶାଖ ହୋଇଲେ ତହିଁ ଶୂନ୍ୟ ଯୋଗ କର । ଜ୍ୟେଷ୍ଠମାସେ ଏକ ଯୋଗ କରିବ ସୁଜନ । ଆଷାଢ଼ରେ ସ୍ୱର ଶ୍ରାବଣରେ ଆଠ ପୁଣ । ଏହି ମାସେ ଭିନ୍ନ ଅନ୍ୟ ମାସ ହୋଇଥିଲେ । ଦଶ ଯୋଗ କରିବ ତହିଁରେ ଜାଣ ଭଲେ ॥ କୃଷ୍ଣ ଶୁକ୍ଳପକ୍ଷ ଯେତେ ତରଣ ଦିବସ । ଶୁକ୍ଳ ପକ୍ଷେ ଯୋଗ ନେଇ ପେହ୍ନ ପଞ୍ଚଦଶ ॥ ଅବଶିଷ୍ଟ ଅଙ୍କ ଶୁକ୍ଳପକ୍ଷ ତିଥିହେବ । ପଦରିଲୁ ଊଣା

ଥିଲେ କୃଷ୍ଣପକ୍ଷ ହବ । ଏକ ରହିଥିଲେ ପ୍ରତିପଦ ଯେ ଅଟଇ । ଦୁଇରେ ଦ୍ୱିତୀୟା ଶନ ଭୃତୀୟା ବୋଲଇ । ଚାରି ରହିଲେ ଚତୁର୍ଥ ବୋଲଣ ଜାଣିବ । ପାଞ୍ଚରେ ପଞ୍ଚମୀ ଛଅରେ ଷଷ୍ଠୀ ପ୍ରମାଣିବ ॥ ସାତରେ ସପ୍ତମୀ ଆଠ ଅଷ୍ଟମୀ କହଇ । ନଅରେ ନବମୀ ବୋଲି । ଚତ୍ତେ ହେବୁକର ॥ ଦଶ ରହନ୍ତେ ଦଶମୀ କଥି ଯେ ଅଟଇ । ଏଗାରରେ ଏକାଦଶୀ ବୁଝିମନଦେଇ ॥ ବାରରେ ଦ୍ୱାଦଶୀ ତେରରେ ତ୍ରୟୋଦଶୀ ହୁଏ । ଚଉଦରେ ଚତୁର୍ଦ୍ଦଶୀ ପରକାଶ ପାଏ । ପନ୍ଦରରେ ପୂର୍ଣ୍ଣିମା ଶୂନ୍ୟରେ ଅମାବାସ୍ୟା । କୃଷ୍ଣ ଶୁକ୍ଳପକ୍ଷେ କଥି ଏସନ ସମସ୍ୟା । ଏବେ ଶୁଣ ଖନା ବାକ୍ୟ ଯାହା ଲେଖା ଅଛି । ଗୁଣନାକୁ ବଇଶାଖ ମାସ ଯେନବାକୁ । ବୃଷମାସ ଜ୍ୟେଷ୍ଠ ବୋଲି ମନେ ହେବୁକର । ଅଷାଢ଼କୁ ମିଥୁନ କହନ୍ତି ନରନ୍ତର ॥ ସକ୍ରବର ସିଂହ ନାମ ସୂଜନ ବୁଝିବ । ତଉରୁ ସଂଶସ୍ୱମାନ ବଳାଣ କରିବ ।

ଉଦାହରଣ ଯଥା —

| | |
|---|---|
| ବର୍ଷର ପ୍ରଥମ ଦିନ ଦଶମୀ ହେଲେ ତାର ସଂଖ୍ୟା······ | ୧୦ |
| ଆଷାଢ଼ ମାସର ଦିନ ସଂଖ୍ୟା··· | ୧୨ |
| ଆଷାଢ଼ ମାସ ହେବୁ ଅନ୍ତରକ୍ତ··· | ୪ |
| | ମୋଟ—୨୬ |

୨୬ — ୧୫ = ୧୧ ଅବଶିଷ୍ଟ

ଏଥିରୁ ଜଣାଗଲା ଆଷାଢ଼ ୧୨ ଦିନ ଆଷାଢ଼ ଶୁକ୍ଳପକ୍ଷ ଏକାଦଶୀ ହେବ । ଇତି ।

## ନକ୍ଷତ୍ର ଗଣନ

ମାସ ନକ୍ଷତ୍ର କଥି ସୂଚା, ତାହା ସଙ୍ଗେ ମିଶାରେ ପୂଚା ଅଙ୍କାରେ ଚଉଦ, ଆଣ୍ଟେକ ବାର, ସତାଇଶେ ହର ନକ୍ଷତ୍ର ସାର

ନକ୍ଷତ୍ର ଜାଣିବା ଯୁକ୍ତି କହିବା ବୁଝି । ଖଡ଼ିକାରମାନେ ଶୁଣ ହରଷିତ ହୋଇ ॥ ମାସ ନାମକୁ ଯେଉଁ ନକ୍ଷତ୍ର ନାମ । କହୁଅଛୁ ଶୁଣ ଏବେ ତାହାର ମରମ ॥ ବୈଶାଖ ମାସେ ବିଶାଖା, ଜ୍ୟେଷ୍ଠା ଜ୍ୟେଷ୍ଠ ମାସେ । ଆଷାଢ଼ରେ ପୂର୍ବାଷାଢ଼ା ବୁଝିବ ହରଷେ । ଶ୍ରାବଣରେ ଶ୍ରାବଣା ଭାଦ୍ରବେ ପୂର୍ବଭାଦ୍ର । ଆଶ୍ୱିନେ ଅଶ୍ୱିନୀ, କାର୍ତ୍ତିକେ କୃତ୍ତିକା ଦିଅ ॥ ମାର୍ଗଶିର ମୃଗଶିର ଅଟଇ ନିଶ୍ଚୟ । ପୌଷମାସେ ପୁଷ୍ୟା ବୋଲି ଜାଣିରଖ ଚିତ୍ତ । ମାଘରେ ମଘା ନକ୍ଷତ୍ର ବୋଲି ହେଜୁକର । ଫାଲଗୁନେ ପୂର୍ବଫାଲଗୁନୀ ନାମଟି ଜକର । ଚୈତ୍ର ମାସରେ ଚିତ୍ରା ନାମ ଯେ ଅଟଇ । ଘଟକ ନକ୍ଷତ୍ର ହେଲା ମନେ ରଖ ଭାଇ । ଯେଉଁ ଦିନ ଯେଉଁଣ ନକ୍ଷତ୍ର ହୋଇଥିବ । ପଞ୍ଜିକା ନ ଦେଖି ସେହେନେ ନିର୍ଣ୍ଣୟ କରିବ ॥ ତାହା ସହଜ ଭାବରେ ବୁଝାଇଣ ଦେବ । ବୃଦ୍ଧମାନଙ୍କର ମନୁ ସଂଶୟ ଦୂରିବ ॥ ପ୍ରଥମରେ ଘଟକ ନକ୍ଷତ୍ରକୁ ଥୋଇବ । ସେ ଦିନର ତିଥି ତାର ସଙ୍ଗେ ମିଶାଇବ ॥ କୃଷ୍ଣପକ୍ଷ ହୋଇଥିଲେ ମିଶାଅ ତଦଶ । ଶୁକ୍ଳପକ୍ଷ ହେଲେ ଯୋଗ କରିବ ଦୁ ଦଶ । ସମୁଦାୟ ଯେତେକ ହୋଇବ ଯୁକତ । ଶତାଇଶେ ହରି ଶେଷ ବୁଝ ହୋ ପଣ୍ଡିତ ॥ ଯେଉଁ ଅଙ୍କ ଅବଶିଷ୍ଟ ରହିବ ନିଶ୍ଚୟ । ସେ ଅଟଇ ସିଦା ସେହି ଦିନର ନକ୍ଷତ୍ର । ଏମନ୍ତ ଭାବରେ ସୁସ୍ପଷ୍ଟ ବୁଝିଣ ପାରିବ । ଖନା ବଚନ ଦେବତା ଅଟଇ ଯେ ଧ୍ରୁବ ।୬୧।

ଉଦାହରଣ ଯଥା—

ମନେକର ବର୍ତ୍ତମାନ ଆମ୍ଭମାନଙ୍କ ନିକଟରେ ପାଞ୍ଜି ନାହିଁ । କେବଳ ଏତିକି ଜାଣୁ ଆଜି ମାଘମାସ କୃଷ୍ଣପକ୍ଷ ଦଶମୀ, ତେବେ ଆଜି କେଉଁ ନକ୍ଷତ୍ର ବୋଲି ଜାଣିବା ?

ଛସାବ —

ମାଘମାସରେ ପଞ୍ଚକ ନକ୍ଷତ୍ର 'ମଘ' ଏହା ଅଙ୍କ ସଂଖ୍ୟା ୧୦
ତିଥି ୧୦
କୃଷ୍ଣପକ୍ଷ ହେବୁ ଅତିରିକ୍ତ ୨୪
ମୋଟ ୪୪

୪୪ ÷ ୨୭ = ଘୁଣ୍ଡ ଫଳ, ୧୭ ଅବଶିଷ୍ଟ ।

ଏଥିରୁ ଜଣାହେଲା ଅବଶିଷ୍ଟ ୧୭ ହେବାରୁ, ମାଘ ମାସର କୃଷ୍ଣପକ୍ଷ ଦଶମୀ ଦିନ ଅନୁରାଧା ନକ୍ଷତ୍ର ହେବ ।

ଉପରୋକ୍ତ ହିସାବ ମତେ ମୋଟ ଯୋଗଫଳ ଯେତେ ସତାଇଶିରୁ ଊଣା ହେବେ ତାହାକୁ ନକ୍ଷତ୍ର ହେଳ ଗଢତାକୁ ହେବ । ଉକ୍ତ ନିୟମାନୁସାରେ ଯେ କୌଣସି ଦିନର ନକ୍ଷତ୍ର ସହଜରେ ଜଣା ହୁଅଇ ।

## ଚନ୍ଦ୍ର ଗ୍ରହଣ ନିରୂପଣ

ଯେ ଯେ ମାସେ ସେ ସେ ରାଶି, ତାହାର ସପ୍ତମେ ଥିଲେ ଶଣୀ । ସେ ଦିନ ଯଦ ହୁଏ ପୌର୍ଣ୍ଣମାସୀ, ଅବଶ୍ୟ ରାହୁ ଗ୍ରାସ ଶଣୀ ଦୁଇ, ତିନ, ପାଞ୍ଚ; ଛଅ, ଏକାଦଶେ ଦେଖିବଅ । ୮ ।

ଚନ୍ଦ୍ର ଗ୍ରହଣ ଗଣନା ଶୁଣ ସଧୁଜନ । ଯେଉଁମାସେ ଯେଉଁ ରାଶି ଜାଣିବ ଘେନ ।। ବଇଶାଖ ହେଲେ ମେଷ ବୋଲି ହେବୁବାର । ଜ୍ୟେଷ୍ଠେ ବୃଷ ଆଷାଢ଼େ ମିଥୁନ କରିଷ୍ଥିର ।। ଶ୍ରାବଣରେ କର୍କଟ ଭାଦ୍ରବେ ସିଂହ ହୋଇ । ଆଶ୍ୱିନରେ କନ୍ୟା କାର୍ତ୍ତିକେ ତୁଳା ଅଟଇ ।। ମାର୍ଗଶିରେ ବୃଶ୍ଚିକ ପୌଷରେ ଧନୁ ଅଟେ । ମାଘ ମାସରେ ମକର ବୋଲିଣ ପ୍ରକଟେ ।। ଫାଲଗୁନକୁ କୁମ୍ଭ ବୋଲି ଚିତ୍ତରେ ଘେନିବ । ଚଇତ୍ର ମାସକୁ ମୀନ ବୋଲି ପ୍ରମାଣିବ ।। ଯେ କୌଣସି ମାସର ରାଶିକୁ ଚିତ୍ତେ ଧର । ଗଣନା କରିବ ମନେ ସଂଶୟ ନକର ।। ଏହି ରାଶିରୁ ସମସ୍ତ ଗଣନା କରିବ । ଯେଉଁ ଚନ୍ଦ୍ର

ହୋଇବ ତାହାକୁ ମନେ ଲବ ॥ ସେହ୍ବଦନ ଯେବେ ପୂର୍ଣ୍ଣିମା ହୁଅଇ ଜାଣ । ଖନା କହନ୍ତି ନିଶ୍ଚୟ ହେବ ଚନ୍ଦ୍ରଗ୍ରହଣ । ଗ୍ରହଣ ଦର୍ଶନେ ଶୁଭ ଅଶୁଭ କହିବା । ସକଳଜନଙ୍କ ଚିତ୍ତ ସଂଶୟ ବହିବ । ନିଜ ରାଶିଠାରୁ ଯେବେ ସପ୍ତମ ଏକ । ହୋଇଲେ ଗ୍ରହଣ ନ ଦେଖିବ ସୁବିବେକ ॥ ଦ୍ୱିତୀୟ ତୃତୀୟ ହେଲେ ଦେଖିବ ଗ୍ରହଣ । ଚତୁର୍ଥରେ ନ ଦେଖିବ କେତେବେଳେ ଜାଣ ॥ ପଞ୍ଚମ ଷଷ୍ଠରେ ଭୟ ନ କରି ଦେଖିବ । ସପ୍ତମ ଅଷ୍ଟମ ହେଲେ ବର୍ଜିତ କରିବ । ନବମେ ଦଶମେ ନ ଦେଖିବଟି ନିଶ୍ଚିତ । ଏକାଦଶେ ଗ୍ରହଣକୁ କର ଦୃଷ୍ଟିପାତ ॥ ଦ୍ୱାଦଶେ ଅଶୁଭ କେବେ କେହେ ନ ଦେଖିବ । ଖନା ବଚନକୁ ମିଥ୍ୟା ବୋଲି ନ ଭାବିବ । ୧୮ ।

## ଗର୍ଭସ୍ଥ ସନ୍ତାନ ଗଣନା

ବାଣର ପୃଷ୍ଠ ଦେଇ ବାଣ, ଶ୍ଳେଷର ପିଲ ଗଣି ଆଣ ।
ନାମ ମାସ ଭରଣ ଏକ, ଆଠରେ ହର ସନ୍ତାନ ଦେଖ ।
ଏକ ତିନ ଥିଲେ ବାଣ, କେବେ ତାହାର ପୁତ୍ର ଜାଣ ।
ଦୁଇ ଚାରି ଛଅ ଥିଲେ, କନ୍ୟା ଜନମ ହୁଏ ଭଲେ ॥
ଯେବେ ରହଇ ଶୂନ୍ୟ ସାତ ତେବେ ନାଶିବ ଗର୍ଭପାତ ।୧୯।

ସନ୍ତାନ ଗଣନା ଏବେ ଶୁଣ ମନଦେଇ । ବାଣ ଅର୍ଥ ପଞ୍ଚକୁ ବୁଝିବ ଚିତ୍ତ ଭାଇ । ପଞ୍ଚ ପୃଷ୍ଠ ପାଞ୍ଚ ଦେଲେ ହେଲା ପଞ୍ଚାବନ । ତାହାକୁ ରଖିବ ଏକ ସ୍ଥାନରେ ସ୍ଥାପନ ॥ ଗର୍ଭିଣୀ ତାହାର ନାମାକ୍ଷର ଅଙ୍କ ଯେତେ । ତା ସଙ୍ଗେ ଦେଇ ମିଶାଅ ହରଷତ ଚିତ୍ତେ ॥ ଗର୍ଭବତୀ ମାସକୁ ତା ସଙ୍ଗେ ମିଶାଇବ । ସମୁଦାୟ ଯୋଗଫଳ ଯେତେକ ହୋଇବ । ଆଠଦ୍ୱାରା ହର କରିବ ତାକୁ ପୁଣ । ଲବ୍‌ଧରେ କିଛି ମାତ୍ର ନାହିଁ ପ୍ରୟୋଜନ । ଅବଶିଷ୍ଟ ଯେତେ ଅଙ୍କ ରହିବ ନିଶ୍ଚିତ ଚର୍ଚ୍ଚିକୁ ସୂତ ଦୁହିତା ବୁଝିବା ଚତୁର ॥ ଏକ ତିନି ପାଞ୍ଚ ଯେବେ ରହେ ଅବଶେଷ । ଜାଣିବ ପୁତ୍ର ଜନମ ହୋଇବ

ଅବଶ୍ୟ ॥ ଦୁଇସ୍ଥଳ ଛଅ ଅଂଶ ରହିଲେଟି ଜାଣ । ନଷ୍ଟପ୍ରାୟ ଦୁହିତା ବୋଲି ଜାଣିବ ପ୍ରମାଣ । ଶୂନ୍ୟ କମ୍ବା ସାତ ଯେବେ ଅବଶିଷ୍ଟ ରହେ । ତେବେ ସେ ନାରୀର ଗର୍ଭପାତ ଯେ ହୁଅଇ ॥ ଏହିରୂପେ ସୁତ ଦୁହିତା ହୋଇବା ଜାଣିବ । ଖଣାର ବଚନ ଯେବେ ଅନ୍ୟଥା ନୋହିବ । ୧୯ ।

ଉଦାହରଣ ଯଥା—

କୌଣସି ବ୍ୟକ୍ତି ଗଣକଙ୍କ ନିକଟକୁ ଯାଇ ପଚ୍ଛରିଲେ 'କନକ' ନାମରେ ଗୋଟିଏ ନବମ ମାସିଆ ଗର୍ଭିଣୀ ସ୍ତ୍ରୀ ବର୍ତ୍ତମାନ ପ୍ରସବ ଯନ୍ତ୍ରଣା ଅନୁଭବ କରୁଅଛନ୍ତି, ତାର ପୁଅ ହେବ କି ଦୁହିତା ହେବ । ଶୀଘ୍ର କୁହନ୍ତୁ ।

ଗଣକ ଏହା ଶୁଣି ସେ ବ୍ୟକ୍ତିଙ୍କୁ ଯାହା ଉତ୍ତର ଦେଲେ ତାର ମର୍ମ ଏ ସ୍ଥାନରେ ଉଦାହରଣ ସ୍ୱରୂପ ପ୍ରଦତ୍ତ ହେଲା ।

| | |
|---|---|
| ନୃସାନୃ—ବାଣରେ ବାଣ ଅର୍ଥାତ୍ ପାଞ୍ଚରେ ପାଞ୍ଚ | ୫୫ |
| ଗର୍ଭିଣୀର ନାମ 'କନକ' ଅକ୍ଷର ସଂଖ୍ୟା | ୩ |
| ଗର୍ଭୋଦୟ ହେବାର ମାସ ସଂଖ୍ୟା | ୯ |
| ମୋଟ | ୬୭ |

୬୭ ÷ ୮ = ୮ ଲବ୍ଧଫଳ ୩ ଅବଶିଷ୍ଟାଂଶ ।

ଏଥିରୁ ଜଣାହେଲା ଅବଶିଷ୍ଟ ୩ ରହିବାରୁ ସେ ସ୍ତ୍ରୀ (କନକ)ର ପୁଅ ଜାତ ହେବ ।

ଗ୍ରାମ ଗର୍ଭିଣୀ ଫଳ ଯୁକ୍ତା, ତିନ ଦେଇ ହରରେ ପୁତ୍ରା ।
ଏକେ ସୁତ ଦ୍ୱିଖଣ୍ଡେ ସୁତା, ଶୂନ୍ୟ ରହିଲେ ଗର୍ଭ ମିଥ୍ୟା ।
ଏକଥା ଯେବେ ମିଥ୍ୟା ହୁଅଇ
ତେବେ ସେ ପୁଅ ବାପର ନୁହଇଁ । ୨୦ ।

ଗର୍ଭିଣୀର ବାସ ଗ୍ରାମ ନାମ ଯେତେକ୍ଷର । ତାହାକୁ ରଖିବ ନେଇ ଯତନପ୍ରକାର । ଚନ୍ଦ୍ର କରତାଙ୍କୁ ଯୁକ୍ତ ଏକଫଳ ନାମ । ତାଙ୍କ

ଜନ୍ମିବା ସ୍ଥାନର ଅକ୍ଷର ପ୍ରମାଣ ॥ ଗର୍ଭିଣୀର ନାମାକ୍ଷର ସେଣ ଯୋଗ କର । ଯେତେ ହେଲା ତାକୁ ତିନ ଦେଇ ହରେ ହର । ଲବଧରେ ପ୍ରୟୋଜନ ନାହିଁଟି କାହାର । ଅବଶେଷକୁ ଦେଖିଣ ଫଳ କର ସ୍ଥିର । ଯେବେ ଅଂଶ ରହେ ଏକ ପୁତ୍ର ହେବ ଜାତ । ଦୁଇ ରହିଲେ ଦୁହିତା ବୁଝିବୁ ନିଶ୍ଚିତ ॥ ଶୂନ୍ୟ ରହିଲେ ମିଥ୍ୟା ବୋଲିଣ ହେବୁ କରୁ ॥ ସନ୍ତାନ ନାହିଁ ବୋଲି ଆଶା ନ କର ॥ ଏହି ଫଳ ଯେବେ ଜନମସ୍ପୃଷ୍ଟି ଦୃଷ୍ଟାନ୍ତ । ଖଣା ବୋଲେ ସେ ସନ୍ତାନଙ୍କୁ ଜାଣିବ ବୋଲି କହି ।୨୦

ଉଦାହରଣ ଯଥା—

ଗର୍ଭିଣୀର ବାସଗ୍ରାମ ନାମ "ସୁଜଙ୍ଗ" ଅକ୍ଷର ସଂଖ୍ୟା ୩
ଗର୍ଭିଣୀର ନାମ "ସୁଦଲ୍ଲମଣି" ୫
ଫଳର ନାମ "ଗୁବାକ" ୩

ମୋଟ—୧୧

୧୧ ÷ ୩ = ୩ ଭାଗଫଳ, ୨ ଅବଶିଷ୍ଟାଂଶ

ଏଥିରୁ ଜଣାଗଲା ଅବଶିଷ୍ଟ ୨ ରହିବାରୁ ସେ ଗର୍ଭିଣୀର ନିଶ୍ଚୟ ଦୁହିତା ଜନ୍ମ ହେବ ।

ଯେତେ ମାସ ଗର୍ଭିଣୀଙ୍କ ନାମ ଯେତେ ଅକ୍ଷର ।
ଯେତେ ଜଣ ପ୍ରଶ୍ନ ସ୍ଥାନେ ଥିବେ ଯୋଗ କର ।
ସାତେ ହର ତହୁଁ ଶେଷ ଜାଣ ଯେବେ ରହେ ।
ଏଥି ପୁତ୍ର ଆନେ କନ୍ୟା ଜାଣିବ ନିଶ୍ଚୟେ । ୨୧ ।

ଗର୍ଭିଣୀର ନାମାକ୍ଷର ସଂଖ୍ୟାକୁ ଗଣିବ । ତା ସଙ୍ଗେ ଗର୍ଭ ଉଦୟମାସ ମିଶାଇବ । ପ୍ରଶ୍ନ ଗଣନା ସମୟେ ଯେତେ ସ୍ଥାନରେ ଶୁଣ । ଯେତେ ଲୋକ ଥିବେ ତାଙ୍କୁ ମନ ଦେଇ ଗଣ । ସେ ଲୋକ ସଂଖ୍ୟା ଅଙ୍କକୁ ତହିଁରେ ମିଶାଅ । ସାତଦ୍ୱାରା ହର ଅବଶିଷ୍ଟ ବୁଝିନିଅ ॥ ଏକ ତିନ ପାଞ୍ଚ ଥିଲେ ପୁତ୍ର ଜନମିବ । ଦୁଇ ଚାରି ଛଅରେ ଯେ

ଦୁହିତା ହୋଇବ । ଶୂନ୍ୟ ରହିଲେ ସନ୍ତାନ ପକ୍ଷେ କଷ୍ଟକର ଖନ ବଚନ ନୁହଇ ଅନ୍ୟଥା ପ୍ରକାର । ୨୧ ।

ଉଦାହରଣ ଯଥା—

| | | |
|---|---|---|
| ଗର୍ଭିଣୀର ନାମ 'ରୁକ୍ମିଣୀ' ଅକ୍ଷର ସଂଖ୍ୟା | | ୪ |
| ଗର୍ଭବତୀ ହେବାର ମାସ | " | ୯ |
| ଗଣନାକାରୀ ଓ ପ୍ରଶ୍ନକର୍ତ୍ତା | " | ୨ |
| ଗଣନା ସ୍ଥାନରେ ଥିବା ଅନ୍ତରକ୍ତ ଲୋକ | " | ୪ |
| | ମୋଟ | —୧୯ |

୧୯ ÷ ୭ = ୨ ଲବ୍ଧଫଳ ୫ ଅବଶିଷ୍ଟାଂଶ ।

ଏଥିରୁ ଜଣାଗଲା ଅବଶିଷ୍ଟ ୫ ରହିବାରୁ ସେ ଗର୍ଭିଣୀର ପୁତ୍ର ଜନ୍ମହେବ ।

ନାମ ମାସ ଲକ୍ଷଣ ଏକ, ତାଙ୍କୁ ଦ୍ୱିଗୁଣ କରି ଦେଖ ।
ସାତ ମିଶାଇ ଆଠରେ ହର, ସମରେ ପୁତ୍ର ବିଷମେ ନାରୀ ।୨୨।

ଗର୍ଭିଣୀର ନାମାକ୍ଷର ପୁଣି ଗର୍ଭମାସ । ଏକତ୍ର କରିଣ ଦ୍ୱିଗୁଣ । ଆଠରେ ହରିଣ ଶେଷଠାରେ ରଖ ତହିଁ । ଏକ ତିନ ପାଞ୍ଚ ସାତକୁ ବିଷମ କହି ଏହି । ଏଥି ଯେତେକ ଅବଶିଷ୍ଟାଂଶ ରହେ କେହି । ତାହା ହେଲେ ପୁତ୍ରଜାତ ହୋଇବ ନିଶ୍ଚୟ । ସୁପଣ୍ଡିତମାନେ ବୁଝି ନ ରଖି ସଂଶୟ ।। ଦୁଇ ଚାରି ଛଅ ଶୂନ୍ୟ ହେଲେ ବୋଲି ସମ । ଏହି ମଧ୍ୟ ଅଂଶ କେହି ରହିଲେ ଜାଣିବ । ନିଶ୍ଚୟ ଦୁହିତା ଜନ୍ମ ହୋଇବ ତାହାର । ଖଣାବଚନକୁ ସତ୍ୟ ବୋଲି ମନେ ଧର ।୨୨

ଉଦାହରଣ ଯଥା—

| | |
|---|---|
| ଗର୍ଭିଣୀର ନାମ 'କମଳା' ଅକ୍ଷର ସଂଖ୍ୟା | ୩ |
| ଗର୍ଭବତୀ ମାସ ସଂଖ୍ୟା | ୯ |
| ମୋଟ | —୧୨ |

୧୨ × ୨ = ୨୪ + ୭ = ୩୧ ।

୩୧ ÷ ୮ = ୩ ଭାଗଫଳ, ୭ ଅବଶିଷ୍ଟାଂଶ ।

ଅବଶିଷ୍ଟ ୭ (ସପ୍ତମ) ହେବାରୁ କମଳାର କନ୍ୟା ଜାତ ହେବ ।

—*—

# ଚତୁର୍ଥ ଅଧ୍ୟାୟ

## କୋଷ୍ଠୀ ବିଚାର

ଖନା କହେ ଶ୍ୱଶୁରେ ହେ କେଉଁ ଲଗ୍ନ ଦେଖ,
ଲଗ୍ନର ସପ୍ତମ ଘରେ କେଉଁ ଗ୍ରହ ଲେଖ,
ଥିଲେ ଶନି ସପ୍ତମ ଘରେ, ଅବଶ୍ୟ ତାକୁ ମ୍ଳେଚ୍ଛା କରେ ।

ରବି ଥିଲେ ଭ୍ରମଏ ଭୂଖଣ୍ଡ, ଚନ୍ଦ୍ର ଥିଲେ କରେ ଦଣ୍ଡ ।
ମଙ୍ଗଳ ଥିଲେ କରେ ଖଣ୍ଡ ଖଣ୍ଡ, ଅସ୍ତ୍ର ଘାତେ କଟେ ତାର ମୁଣ୍ଡ ।
ବୁଧ ଥିଲେ ଧନ ବୃଦ୍ଧି କରଏ, ଗୁରୁ ଶୁକ୍ର ଥିଲେ ବହୁଧନ ପାଏ ।
ଲଗ୍ନର ସପ୍ତମେ ରାହୁ କେତୁ, ମାତା ପିତା ପୀଡ଼ା କରେ ହେତୁ ।।

କୋଷ୍ଠୀର ବିଚାର ଏବେ ଶୁଣ ସାଧୁଜନ । ଲଗ୍ନ ଦେଖି ସବୁ ଫଳ କରିବ ଗଣନ ।। ଲଗ୍ନରୁ ସପ୍ତମେ ଶନି ଯେବେ ହୁଏ ସ୍ଥିତ । ତେବେ ସେହି ପ୍ରାଣୀ ମ୍ଳେଚ୍ଛା ହୁଅଇ ନିଶ୍ଚିତ । ରବି ଥିଲେ ମହୀରେ ଭ୍ରମଇ ସେହି ପ୍ରାଣୀ । ଚନ୍ଦ୍ର ଥିଲେ ରାଜଦଣ୍ଡ ଭୋଗ କରେ ପୁଣି ।। ମଙ୍ଗଳ ରହିଲେ ଅସ୍ତ୍ର ଦଣ୍ଡ ହୁଏ ।। ବୁଧ ଥିଲେ ବିଶେଷ ଧନ ବୃଦ୍ଧି କରଏ । ଗୁରୁ କିମ୍ବା ଶୁକ୍ରଥିଲେ ମିଳେ ଧନ । ରାହୁକେତୁ ଥିଲେ ପିତାମାତା ପୀଡ଼ା ପୁଣ ।। ଖନାର ବଚନ କେବେ ଅନ୍ୟଥା ନୁହଇ । କୋଷ୍ଠୀ ଦେଖି ଉକ୍ତଫଳ କହିବ ବୁଝାଇ ।

ଲଗ୍ନେ ଆଙ୍କା ଲଗ୍ନେ ଦାଙ୍କା*, ଲଗ୍ନେ ଯଦି ସ୍ୱଳ୍ପ ତନୁଜା ।
ଲଗ୍ନର ଚତୁର୍ଥ ସପ୍ତମେ ପାପ*, ମରେ ଜନନୀ ପୀଡ଼ାପାଏ ବାପ
ଲଗ୍ନେ ଶନି ଥିଲେ ଅଙ୍ଗ ହୀନ ।
ଗୁରୁ ଯଦି ଥାଏ ତା ସଙ୍ଗେ, ଆୟୁ ଲକ୍ଷ୍ମୀ ବଢେ ରଙ୍ଗେ ।
ଚନ୍ଦ୍ର ସୁନ୍ଦର ବୁଧରେ ଚିରାୟୁ, ଶୁକ୍ରେ ଧନବାନ ବୃଦ୍ଧି ପରମାୟୁ ।
ଲଗ୍ନେ ରାହୁ କରେ ରୋଗ, କେତୁ ଲଗ୍ନେ ସହନେ ଶୋକ । ୨ ।

ଲଗ୍ନସ୍ଥିତ ଗ୍ରହ ଏବେ ଶୁଣ ସାଧୁଜନ । ଶୁଭାଶୁଭ ଫଳମାନ କରିବା ବର୍ଣ୍ଣନା । ମିହିରଙ୍କ ଆଗେ ଖଣା କହିଛନ୍ତି ଯାହା । ସାବଧାନ ହୋଇକରି ଶୁଣ ଏବେ ତାହା ॥ ଲଗ୍ନରେ ରବି ରହିଲେ କ୍ରୋଧବନ୍ତ ନର ଚନ୍ଦ୍ର ଥିଲେ ନର ଦେହ ହୁଅଇ ସୁନ୍ଦର ॥ ଲଗ୍ନରେ ମଙ୍ଗଳ ଥିଲେ ଅଙ୍ଗହାନି ପାଏ ବୁଧ ଥିଲେ ବଡ ପଣ୍ଡିତ ଚିରାୟୁ ହୁଏ । ଲଗ୍ନ ସଙ୍ଗେ ହେବେ ବୃହସ୍ପତି ହୋଇ ସ୍ଥିତ । ଯଶମାନ ଧନ ଆୟୁ କରଇ ବର୍ଦ୍ଧିତ ॥ ଶୁକ୍ର ଥିଲେ ଧନବନ୍ତ ହୁଅଇ ମାନବ । ଶନିଥିଲେ ଦୁର୍ବଳ ବୋଲିଣ ମନେ ଭାବ ॥ ଲଗ୍ନ ରାହୁ ଥିଲେ ପ୍ରାଣ ଅଙ୍ଗେ ହୁଏ ରୋଗ । କେତୁ ଥିଲେ ସହୋଦରେ କଷ୍ଟେ ଦୁଃଖ ଯୋଗ ।୨।

ଅଳି ବୃଷ ଲଗ୍ନେ ବୈଠେ, ଧରେ ଗୁରୁ ଶଶୀ ଷଷ୍ଠେ ॥
ଚନ୍ଦ୍ରର ଷଷ୍ଠରେ ପାପ ମିଳନ, ସପ୍ତାହକେ ମାତାର ମରଣ । ୩ ।

ବୃଶ୍ଚିକ ଅଥବା ଧନୁ କନ୍ୟା କୁମ୍ଭେ ଲଗ୍ନେ । ବୃହସ୍ପତି ସ୍ଥିତ ହୋଇଥିବ ଜନ୍ମକାଳେ ॥ ଚନ୍ଦ୍ରଠାରୁ ଯଦି ଷଷ୍ଠ ସ୍ଥେ ହୋଇବ ଅଥବା ଚନ୍ଦ୍ର ଷଷ୍ଠରେ ପାପ ଥିବ । ଶୁଭଗ୍ରହ ସଙ୍ଗେ ପାପ ରହି ଥାଇ ଯେବେ । ସାତଦିନ ମାତାର ମରଣ ହୁଏ ତେବେ । ୩ ।

*ଲଗ୍ନେ ଆଙ୍କା ଲଗ୍ନେ ଶୂନ୍ୟା, ପାଠାନ୍ତର

*ଲଗ୍ନର ସପ୍ତମେ ଅଷ୍ଟମେ ପାପ ।

ଲଗ୍ନେ ପାପ ସପ୍ତମେ ପାପ, ଜନ୍ମିଲେ ମାଆ ପୀଡେ ବାପ ।
ଯଦି ଶୁଭଗ୍ରହ ନଦେଖେ ଲଗ୍ନେ, ଅବଶ୍ୟ ତାହାକୁ ଯୋଷ୍ଟେଅନ୍ୟେ।

ଲଗ୍ନ ସଙ୍ଗେ ପାପ ଗ୍ରହସ୍ଥିତ ଯେବେ ହେବ । କି ଅବା ସପ୍ତମ ସ୍ଥାନେ ଯଦି ପାପଥିବ ॥ ପିତା ମାତାଙ୍କ ଶରୀରେ ପୀଡ଼ା ପ୍ରକାଶଇ । ଗ୍ରହ ବଳବାନ ହେଲେ ପ୍ରାଣ ବିନାଶଇ । ଶୁଭଗ୍ରହେ ଯେବେ ଲଗ୍ନସ୍ଥାନ ନଦେଖନ୍ତି । ପର ଅଧିନରେ ଧନ କାଟେ ଜାତବ୍ୟକ୍ତି ॥ ଏହା ବୁଝି ଫଳ ନିରୂପଣ କର ଜନେ । ଖନା ବଚନକୁ ଦୃଢ଼ହେବେ ରଖି ମନେ । ୪ ।

ମେଷେ ଥିଲେ ଧନକର, ସୁନା ରୁପାରେ ପୂରେ ଘର ।
ବୃଷେ ଯଦି ରହଇ ଚନ୍ଦ୍ର, ଜଳ ମଧ୍ୟେ ପାତ ଫାନ୍ଦ ।
ମୂର୍ଖ ହୋଇ ବେଦ ବଖାଣେ, ପାଠନପଢ଼ି ଅକ୍ଷର ଚିହ୍ନେ ।୫।

ଜନ୍ମକାଳ୍ରୁ ମେଷ ରବି ଯଦ୍ୟପି ରହଇ । ଜାତମାନଙ୍କର ବହୁ ସମ୍ପଦ କରଇ । ସ୍ୱର୍ଣ୍ଣରୌପ୍ୟାଦିରେ ଗୃହତ୍ରୁଏ ପରିପୂର୍ଣ୍ଣ । ଧନ ମାନ ଯଶ ଆଦି ଲଭେ ସୁପ୍ରମାଣ । ବୃଷେ ଚନ୍ଦ୍ରେ ସ୍ଥିତହେଲେ ଜନମ ଯାହାର । ତାର ବୁଦ୍ଧି ଜଗତକୁ ଅଟେ ଅଗୋଚର ॥ ଜଳମଧ୍ୟେ ଫାନ୍ଦ ପାତେ ଚତୁର ପଣରେ । ମୂର୍ଖ ହେଲେ ମଧ୍ୟ ବହୁ ବୁଦ୍ଧି ତା ହୃଦରେ । ନାନାଶାସ୍ତ୍ର ଅର୍ଥ ସେହୁ ଜାଣଇ ବହୁତ । ସକଳ ପ୍ରାଣୀଙ୍କ ଠାରେ ହୁଅଇ ପୂଜିତ । ପାଠ ନ ପଢ଼ିଣ ସେହୁ ଚିହ୍ନଇ ଅକ୍ଷର । ବେଶ ବେଶ ଯଶକୀର୍ତ୍ତି ବିସ୍ତରେ ତାହାର ॥ ବିଦ୍ୟାପକ୍ଷେ ବୁଦ୍ଧି ତାର ବହୁତ ଅଟଇ । ଖନାର ବଚନ କେବେ ଅନ୍ୟଥା ନୁହଇ ।୫।

ଲଗ୍ନରେ ସଙ୍ଗେ ଥିଲେ ଅବା, ତାହାକୁ ଅଗ୍ନି କରିବ ଶଙ୍କା ।
ଯଦି ମଙ୍ଗଳ ସପ୍ତମେ ଦେଖଇ, ମେଷର ନାହେ ପଡ଼ଇ ସେହି ।
ଲଗ୍ନରେ ରବି ହୋଇ ପ୍ରମାଣ, ବିଂଶପ୍ରେ ଶନି ନକ୍ଷତ୍ରେ ରଣ ।
ଯାତେ ଆଠେ ଗ୍ରହ ମିଳନ, ଜନ୍ମିଲେ ହୁଅଇ ମାତାର ମରଣ ।

ଲଗ୍ନେ କୁଜା ହୁଏ କ୍ଷିପ୍ର, ମିଥ୍ୟାବାଦୀ କୁରଦୃଷ୍ଟି ।
ଯଦ ମଙ୍ଗଳ ସପ୍ତମ ଘରେ, ବଜ୍ରପାତ ମଥା ଉପରେ । ୭ ।

ଲଗ୍ନ ସଙ୍ଗତରେ ଯେବେ ରହେ ଭୂମିସୁତ । ଅଗ୍ନି ଭୟ ହୁଏ ପୁଣି କ୍ରୋଧୀ ସେହୁଜନ । ମଙ୍ଗଳ ସପ୍ତମେ ଥାଇଲଗ୍ନକୁ ଦେଖିଲେ । ବଜ୍ରଘାତେ କ୍ଳେଶ ଲଭେ ସେ ପ୍ରାଣୀ ସଂସାରେ ।। ଦ୍ୱିତୀୟରେ ଶନି ଥିଲେ କରେ ବହୁଗୁଣ । ପୁଣି ବହୁ ବ୍ୟୟକରେ ସେ ପ୍ରାଣୀଟି ଜାଣ ।। ସପ୍ତମେ ଅଷ୍ଟମେ ରାହୁ ସଙ୍ଗତେ ମଂଗଳ । ଥିଲେ ମାତା କ୍ଲେଶୀ ସେହୁ ହୁଅଇ ନଜର ।। ଲଗ୍ନରେ ମଙ୍ଗଳ ଥିଲେ ମିଥ୍ୟାବାଦୀ ହୁଏ । ମନ୍ଦ କର୍ମାନରେ ଚିରଦିନ ଦୁଖ ପାଏ ।। ଲଗ୍ନରେ ସପ୍ତମ ସ୍ଥାନେ ମଙ୍ଗଳ ରହିଲେ । ବଜ୍ରଭୟ ହୋଇ ତାର ଖନା ଏହା ବୋଲେ ।୭।

ସୂର୍ଯ୍ୟ କୁଜ ଲଗ୍ନସ୍ଥିତ, ଅବଶ୍ୟ ଲଗେ ବନ୍ୟର ଘାତ ।
ଦେବତା ବାପେ ରକ୍ଷା ନ ପାଏ, ଅବଶ୍ୟ ତାକୁ ବାଘ ଖାଏ ।

ରବି ମଙ୍ଗଳ ଏ ଦେନି ଲଗ୍ନସ୍ଥାନେଥିଲେ । ବନ୍ୟା ଘାତ ହୁଏ ତାକୁ ଜାଣି ଥାଅ ଭଲେ । ଦେବତାଙ୍କ ବାପ ସୁଦ୍ଧାରଖି ନ ପାରନ୍ତି, ବ୍ୟାଘ୍ର ମୁଖେ ନିଶ୍ଚେ ନାଶ ହୁଏ ସେହିବ୍ୟକ୍ତି ।। ନୋହିଲେ ଆଘାତ, ପାଇ ରକ୍ଷା ହୁଏ ଜାଣ । ଖନାର ବଚନକେବେ ନୁହଇଟି ଆନ ।। ଯଦ ଗୃପ୍ତ ଲଗ୍ନକୁ ଦେଖ, ବାପାର ଆଗେ ମରଣ ଲେଖେ । ଲଗ୍ନର ଚତୁର୍ଥେ କୁଜା, ସେହି ବ୍ୟକ୍ତିର ଫାଶୀ ସଜା ।୮।
ବୃହସ୍ପତି ଯେବେ ଲଗ୍ନସ୍ଥାନ ଦେଖଇ । ପିତାଥାଉ ଥାଉଁ ତାହାର ମରଣ ଆଗ ହୋଇ । ଲଗ୍ନର ଚତୁର୍ଥେ ଶନି ମଂଗଳ ରହିଲେ । ଗଳେ ଫାଶ ଲଗାଇ ଜୀବନ ନାଶେ ହେଲେ ।୮।

ସୂର୍ଯ୍ୟକୁ ଯେ ସପ୍ତର ମେଳା, ଗଛର ଦଉଡ଼ ବନ୍ଧନ ଗଳା ।
ଯଦି ରଖନ୍ତି ଜଗନ୍ନାଥ, ତେବେ ସେ ଖାଏ ମାଚର ଭାତ ।
ଲଗ୍ନ ସଙ୍ଗେ ରବି ମଙ୍ଗଳ ସପ୍ତ ରହିଲେ । ଉଦ୍‌ବନ୍ଧନ ଦ୍ୱାରା ମୃତ୍ୟୁ ଜାଣିଥାଅ ଭଲେ । ତ୍ରିଭୁବନ ନାଥ ଯେବେ ତାହାକୁ ରଖନ୍ତି । ମାଚ ଜନର ଅନ୍ନ ଭକ୍ଷଇ ସେହି ବ୍ୟକ୍ତି ॥ ଏ କଥା ଅନ ମୁହଇ ଚିତ୍ତେ ହେତୁକର । ଖନାର ବଚନ ମିଥ୍ୟା ନୁହେଁ ଛରକାଳ । ୯ ।

ଚନ୍ଦ୍ର ସପ୍ତ ଏକ ସୂତା, ମାତର ଭାତ ଖାଏ ସୂତା ।
ତାହାକୁ ଯଦି ନ ଦେଖେ ଭଲେ, ଯତ୍ନ କରଣ ଫିଙ୍ଗେ ମଲେ ।୧୦।
ଚନ୍ଦ୍ର ସପ୍ତ ଝାଲ ଏକ ସଙ୍ଗେ ହୋଇଥିଲେ ସ୍ଥିତି ଲଗ୍ନ ଅବା ଅନ୍ୟ ସ୍ଥାନେ ବୁଝିବେ ନପୁତ । ଶୁଭଗ୍ରହମାନେ ଯେବେ ତାଙ୍କୁ ନ ଦେଖନ୍ତି । ମାତ ଅନ୍ନ ଭକ୍ଷିଣ କାଟଇ ଏବା ସତ । ପ୍ରଥମରୁ ବହୁ ଯତ୍ନେ ବଢ଼ିଥିଲେ ସେହି । ଅପେକ୍ଷ ପଦାର୍ଥେ ମଲେ ଖନା ଏହା କହି ।୧୦।
ମାତର ସଙ୍ଗେ ଚନ୍ଦ୍ର ବାସ, ମାତୃ ଲଗ୍ନରେ ଜାତ ବିନାଶ ।
ମାତେ ଗ୍ରସ୍ତ କେନ୍ଦ୍ର ହୁଏ, ଜୋର କରଣ ଖନା କହେ ।
ମାତ ଗୃହେ ଚନ୍ଦ୍ର ଯେବେ ଲଗ୍ନରେ ରହଇ । ନଷ୍ଟପ୍ରୟ ଜାତ
କୁଳନାଶେ ଜନ୍ମିଲେ ବଂଶ, ଅବଶ୍ୟ ହୁଏ ଜାତ ଧ୍ୱଂସ ।୧୧।
ବିନାଶ ତାହାର ହୁଅଇ ॥ ମାତ ଗୃହେ ବୃହସ୍ପତି ଚନ୍ଦ୍ର ସଂଗେ ଥିଲେ । କୁଳନାଶ ହୁଏ ନଷ୍ଟେ ବଂଶ ଜନମିଲେ । ନିଜ ଜାତକୁଳ ଗୋଷ୍ଠ ତେଜଇ ସେ ପ୍ରାଣୀ । ଖନାର ବଚନ ଏହା ମନେ ଥାଅ ଜାଣି । ୧୧ ।

ତୁଳାରେ ବୁଧ ବାପର ବାଇ, ମକରେ ସ୍ୱଜ ନ କହେ
ଭୁଞ୍ଜାଇ ॥ ତିନ ଯୋଗ ମୁହଇ ଆନ, କୁମ୍ଭେ ଛାଡ଼ିଯାଏ ପ୍ରାଣ । ୧୨ ।

ତୁଳାରେ ବୁଧ ରହିଲେ ପିତୃକୁଳଘାତୀ ହୁଏ । ମକରେ ରହିଲେ ନୃପତିତୁଲ୍ୟ ହବଏ । କର୍କଟେ ମଂଗଳସ୍ଥିତ ହୋଇଥିବ ଯ ର । କୁମ୍ଭେ

ଯଦି ପ୍ରାଣ ନାଶ ହୁଅଇ ତାହାର । ଅଥବା ଜଳାଶୟରେ ପ୍ରାଣ ବିସର୍ଜଇ । ଖନାର ବଚନ କେବେ ଅନ୍ୟଥା ନୁହଇ । ୧୨ ।
ଭୂଜର ଘରେ ଶୁକ୍ରର ବାସ, ଚନ୍ଦ୍ର ଲଭେ ଯଦି ତାହାର ପାଶ ।
ପାପର ଘରେ ଲଗ୍ନ ଯେବେ, ଅବଶ୍ୟ ପରସ୍ତ୍ରୀ ରତ ତେବେ । ୧୪ ।

ମେଷ କମ୍ବା ବୃଶ୍ଚିକରେ ଶୁକ୍ର ଯେବେ ରହି । ତାହାର ସଂଗରେ ଯଦି ଚନ୍ଦ୍ର ସ୍ଥିତହୋଇ । ଲଗ୍ନ ହୋଇଥିବ ଯେବେ ପାପ ଗ୍ରହ ଗୃହେ । ଅବଶ୍ୟ ପରସ୍ତ୍ରୀଠାରେ ତାର ମନ ରହେ । ଦୃଢ଼ା ଜଣି ପାପକର୍ମେ ଥାଏ ତାର ମତି । ସତ୍ୟ ବାକ୍ୟଙ୍କର ସେହୁ ଟାଳ ହଏ ଧୃତି ॥ ଖନାର ବଚନ କେବେ ମିଥ୍ୟା ନୁହେଁ ଜାଣ । ସତ୍ୟ ସତ୍ୟ ବୋଲି ସବୁ କାଳରେ ପ୍ରମାଣ । ୧୩ ।
ଚନ୍ଦ୍ରର ଗୃହେ ରହିଲେ ସୌରି, ଶଳରେ ନ ମାରେ ଅନେକ ବୈଶ୍ଵ
ରବି ଯଦି ତା ସଙ୍ଗେ ଥାଏ, ଯୁବକ ବେଳେ ମରଣ ହୁଏ । ୧୪ ।

ଚନ୍ଦ୍ରର ଗୃହେ କର୍କଟ ରାଶି ଯେ ଅଟଇ । ସେ ସ୍ଥାନରେ ଯେବେ ଶନିଷ୍ଟିବ ରହିଥାଇ ॥ ଶଳସବ ହିଂସ୍ରଜନ୍ତୁ ମାରି ନପାରନ୍ତି । କେବଳ ବହୁତ ଶତ୍ରୁ ତାହାର ହୁଅନ୍ତି ॥ ରବି ଯଦି ଶନିଷ୍ଟିର ସଂଗେ ଦର୍କଟରେ । ଥିଲେଟି ମରଣ ହୁଏ ଯୁବକ ବେଳରେ ॥ ଶୁଭ ପ୍ରବେଶ କରିଣ ଖନା ବଚନରେ । ଶୁଭାଶୁଭ ଫଳକହ ପ୍ରାଣୀଙ୍କ ଆଗରେ ୧୪
ଶୁକ୍ରର ଘରେ ବୁଜର ବାସ, ଭୃଗୁସ୍ତ ଘରେ ଭାଇର ନାଶ ।
ଆଠେ ବଣେ ନଜର ପୀଡ଼ା, ଚଉଣେ ମରେ ନୋହିଁ ବୁଢ଼ା । ୧୫ ।

ବୃଷ କମ୍ବା ତୁଳା ଏହି ଦେନ ରାଶି ପୁଣି । ଶୁକ୍ରର ଗୃହବୋଲିଣ ଜାଣିବ ପ୍ରମାଣ ॥ ସେ ସ୍ଥାନରେ ମଂଗଳ ରହଇ ସେ ପ୍ରାଣୀର । ଲଗ୍ନରୁ ତୃତୀୟ ସ୍ଥାନ ତେବେ ସେହିସ୍ଥିର । ଭାତୃ କ୍ଲେଶ ବୋଲି ତାକୁ ବୁଝିବ ସୂଜନ । ଲଗ୍ନରୁ ଅଷ୍ଟମ କମ୍ବା ଦଶମ ସେ ସ୍ଥାନ । ତେବେ

ନିଜ ଶରୀରରେ ପୀଡ଼ା ଜାତ ହୁଏ ତରୁଣ ବୟସେ ମୃତ୍ୟୁ ଲଭେ ଖନା କହେ । ୧୫ ।

ତନୁସ୍ଥାନରେ ଗ୍ରହର ମେଳା, ତାର କୋଷ୍ଠୀ ନ କର ହେଳା
ଅଛୁ ଯୋଗ ପାଏ ସିଦ୍ଧି, ନଜେ ଆସି ମିଳାଏ ଋଦ୍ଧି । ୧୬ ।

ସୂର୍ଯ୍ୟଗ୍ରହ ଏକ ରାଶି ମଧ୍ୟରେ ରହିଲେ । ଜାଣିବ ସେ ବ୍ୟକ୍ତି ରାଜଭୋଗ ଭୁଞ୍ଜେ ହେଲେ ।। ଋଦ୍ଧି ବନ୍ଧନରେ ସବୁକାର୍ଯ୍ୟ ଲଭେସିଦ୍ଧି ନିକଟରେ ପ୍ରାପତ ହୁଅନ୍ତି ଅଷ୍ଟନିଧି । ରାଜା ତୁଲ୍ୟ ବୁଦ୍ଧି ତତକ୍ଷଣ ଅଟେ ତାର । ଦାସ ଦାସୀ ଆଦ ପାଶେ ଖଟନ୍ତି ନିକର ।। ବହୁତ ଭାଗ୍ୟବନ୍ତର ହୁଏ ଏହି ଯୋଗ । ତା କପାଳେ ସବୁ କାଳେ ଶୁଭ ଫଳ ଭୋଗ ।।

ତନସ୍ଥାନରେ ଦେଖ ଜାହା, ଜାର କୋଷ୍ଠୀ ମତେ ଧୋଇବା ।
ରାଜାହୋଇ ପାଏ ନିଧି ନଜେ ଆସି ମିଳାଏ ଋଦ୍ଧି ।

ତନୁ ଗ୍ରହ ମଧ୍ୟେ ଯେବେ ଥାଏ ବୃହସ୍ପତି । ରାଜସୁତ ନୋହି ତାର ରାଜତୁଲ୍ୟ ମତି ।। ସକଳ ସମ୍ପଦ ଆସି ପାଶରେ ମିଳଇ । ପରିକର ମାନେ ପାଶେ ଥାନ୍ତି ହର୍ଷ ହୋଇ ।। ଏମନ୍ତ ଯୋଗକୁ ଶୁଭ ବୋଲିଣ ଜାଣିବ । ଖନାର ବଚନ କେବେ ଅନ୍ୟଥା ନୋହିବ ।୧୭

ମକରେ କୁଜ ଧବଳ ସିଂହେ, ନିତ୍ୟେ କ୍ରୀଡ଼ାକରେ ରଙ୍ଗେ ।
ଇଷ୍ଟ କୁଟୁମ୍ବେ କରେ ଭୋଗ, ଏମନ୍ତ କୋଷ୍ଠୀ ନରପତିର ଯୋଗ,

ମକରେ ମଙ୍ଗଳ, ସିଂହେ ଚନ୍ଦ୍ର ଉଚ୍ଚ ଥିଲେ । ଜାତ ବ୍ୟକ୍ତି ନାନା କ୍ରୀଡାକରଇ ରଂଗରେ । ନ କୁଟୁମ୍ବରେ ସୁଖୀ ହୋଇଣ ନିୟତ । ସର୍ବଦା କରଇ ତାର ଚିତ୍ତ ଆନନ୍ଦିତ ।। ନରପତି ତୁଲ୍ୟ ପୂଜା ପାଏ ସେ ସେ ସଂସାରେ । ସକଳ କାର୍ଯ୍ୟରେ ସିଦ୍ଧି କରଇ ତତ୍କାଳେ । ଚିରକାଳ ସୁଖୀ ସେହୁ କ୍ଳେଶୀ ନ ହୁଅଇ । ପ୍ରାଣୀଙ୍କ ହିତରେ ଖନା ଏହା କହି ଛନ୍ତି । ୧୮ ।

ଲଗ୍ନେ ଶୁକ୍ର କବିଭ୍ର ବଳେ, ଶିଶୁକାଳୁ ଘୋଡ଼ାରେ ଚଢ଼େ ।
ନଚ୍ୟ ଲୋକେ କରେ ସମ୍ବାଦ, ଶାସ୍ତ୍ର ଏଡ଼ ଜରେ ବିବାଦ ।୧୯ ।

ଲଗ୍ନରେ ଶୁକ୍ର ରହଇ କୋଷ୍ଠୀରେ ଯାହାର । କବିତା ଶକ୍ତିରେ ସେହୁ ଜଣେ ଭୂମଣ୍ଡଳ । ପିଲାକାଳୁ ଯାନବାହାନ ତାହାକୁ ମିଳେ । କଥା ଷ୍ଟକୁଯଁ୍ୟରେ ପ୍ରାଣୀମନ ମୋହିପାରେ । ସବୁ ଶାସ୍ତ୍ର ଜବସେହୁ ଜାଣିବ ନକର । ବିଦ୍ୟାବଳେ ପ୍ରଶଂସା ଲଭଇ ନିରନ୍ତର । ଶାସ୍ତ୍ର କଥା ଗୁଢ଼ ବିବାଦରେ ତାଇ ମନ । ସବୁ କାଳେ ଥାଏ ବୋଲି ଜାଣ ବିଜ୍ଞଜନ । ୧୯ ।

ସପ୍ତମେ ଗୁରୁ ଷଷ୍ଠେ ରବି, ପଞ୍ଚମ ଘରେ ବୁଧ ଯବ ।
ଚତୁର୍ଥେ ଶୁକ୍ରେ ଭୁଞ୍ଜେ ରାଜ୍ୟ, ଅବଶ୍ୟ ମିଳେ ଧନ ରାଜ୍ୟ ।
ସପ୍ତମେ ଗୃହରେ ଯେବେ ଥିବ ବୃହସ୍ପତି । ଷଷ୍ଠସ୍ଥାନେ ଦିନକର ହୋଇଥିବନ୍ତି । ପଞ୍ଚମରେ ବୁଧ ଚତୁର୍ଥରେ ଶୁକ୍ର ଥିଲେ । ସେ ପ୍ରାଣୀ ନୃପତି ତୁଲ୍ୟ ହେବ ଜାଣ ଭଲେ ॥ ଅସଂଖ୍ୟ ଧନରତ୍ନରେ ଗୃହପୂର୍ଣ୍ଣ ହୋଇ । ଖନା ବୋଲେ ପରମ ସୁଖରେ ସେହିଥାଇ ।୨୦

ପଞ୍ଚମ ସ୍ଥାନେ ଥିଲେ ଜାଣ, ପର ଧନରେ କୃପଣ ।
ବାପ ପୁଏ ସୁଖେ ଥାଇ, ଅଳ୍ପ ବୟସେ ଖନା କହି ।୨୧।
ଲଗ୍ନର ପଞ୍ଚମ ସ୍ଥାନେ ଶୁକ୍ର ଯେବେ ରହେ । ପରଧନେ କୃପଣ ସ୍ୱଭାବକୁ ସେ କହେ ॥ ପିତାପୁତ୍ର ଆଦି ସୁଖେ ରହନ୍ତି ନିତ୍ୟ । ଅଳ୍ପ ବୟସରେ ଖନା କହିଲେ ପ୍ରଖ୍ୟାତ । କେହୁ ସବୁଥାନ୍ତି ଚନ୍ଦ୍ର ବୁଧ ଚତୁର୍ଥରେ । ଅଥବା ରବି ଶନି ଏକହେ ସେ ଗୃହରେ । ଅଳ୍ପଧନ ସୁଖଭୋଗ କରନ୍ତି ନିଶ୍ଚୟ । ଖନାକହେ ମନେକରୁ ନକର ସଂଶୟ । ଲଗ୍ନେ ଶଶଧର ଅଥବା ଗୁରୁ, ଯେତେ ପାରିଜାତ ଫୁଲର ତରୁ । ଲଗ୍ନେ ଚନ୍ଦ୍ର ଥାଇ ଶୁକ୍ରେ ନ ଦେଖେ, ବିଳାସୀ ହୋଇଣ ଅଭକ୍ଷ୍ୟ ଭକ୍ଷେ ।

ଲଗ୍ନରେ ଚନ୍ଦ୍ରମା ଜନ୍ମା ବୃହସ୍ପତି ଥିଲେ । ପାରିଜାତ ପୁଷ୍ପତରୁ ପ୍ରାପ୍ତେ ଶୋଭେ ଭଲେ ।। କୋମଳ ବଚନେ ସର୍ବପ୍ରାଣୀଙ୍କି ମୋହଇ ଧନଜନ ମାନ ଯଶ ଅଚିରେ ମିଳଇ ।। ସର୍ବପ୍ରାଣୀ ହିତକାଂକ୍ଷୀ ଅଟଇ ସେ ଜନ । ସବୁ ବିଦ୍ୟା ମର୍ମ ସେହୁ ଜାଣେ ଲଭି ଜ୍ଞାନ । ତାଙ୍କୁ ଯେବେ ଶୁଭଗ୍ରହେ ଦେଖି ନ ପାରନ୍ତି । ବଳାହୀ ହୋଇଲେ ସୁଖା ଅଭକ୍ଷ ଭକ୍ଷନ୍ତି ।। ତାହାଙ୍କ ଚକ୍ଷଣ ଉଚ୍ଚର କଳଙ୍କ ଯୁକ୍ତ । ଖନା ବଚନକୁ କେବେ ନମଣ ଅସତ୍ୟ ।୨୧।

ଲଗ୍ନେ ଗୁରୁ ହେତ ବଖାଣେ; ଦଶମେ ସ୍ଥିରୁ ଅନେକ ପୁଣ୍ୟ । ବହୁତ ପୁଅ ଅବଶ୍ୟ ହୋନ୍ତି, ଧନ ଜନ ବଢ଼େ ଖନା ବଦନ୍ତି ।୨୨। ଲଗ୍ନେ ବୃହସ୍ପତି ଥିଲେ ନ ନା ଶାସ୍ତ୍ର ଅର୍ଥ । ସୁମଣ୍ଡିତ ହୋଇ ସର୍ବ ଜାଣଇ ନିଶ୍ଚିତ ।। ବେଦଶାସ୍ତ୍ର ପୁରାଣାଦି କୁଣ୍ଡେ ଅଭ୍ୟାସଇ । ସକଳ ବିଦ୍ୟାରେ ସେହୁ ପ୍ରବୀଣ ହୁଅଇ । ଦଶମରୁ ବୃହସ୍ପତି ଯେବେ ହୁଏ ସ୍ଥିତ । ଜାଣିବ ସେ ବ୍ୟକ୍ତି ଏକା ବହୁପୁଣ୍ୟବନ୍ତ । ଦେବା ଦଆଇବ କଥା ଅନୁକ୍ଷଣେ ତାର । ଦୁଃଖୀ ରଙ୍କଙ୍କର ଅନ୍ନ ଚିନ୍ତେ ନିରନ୍ତର । ଆବର ବହୁତ ସୁତ ହୁଅନ୍ତି ତାହାର ।। ଧନରତ୍ନ ପରିପୂର୍ଣ୍ଣ ସର୍ବଦା ଭଣ୍ଡାର । ନାନା ସୁଖ ଭୋଗ ସେହୁ କରଇ ନିଶ୍ଚୟ । ମିହିରଙ୍କ ଆଗେ ଖନା କହୁଛି ଏମନ୍ତ । ୨୩ ।

ଯଦି ଗୁରୁ ସପ୍ତମଘରେ ଥାଏ, ଶିଶୁ ହେଲେ ମଧ୍ୟ କବିତା ଗାଏ ।

ଦୁଇପାଖେ ପାପଗ୍ରହମାନେ ଥାନ୍ତି ରହି । ମଧ୍ୟ ତାହାର ଯେବେ ଜାତ ଲଗ୍ନହୋଇ ।। ସେ ବ୍ୟକ୍ତିବେଳକୁ ସ୍ୱପ୍ନେ ସୁଖଭୋଗ ଦେଖେ । ଦରିଦ୍ର ହୁଅଇ ବୋଲି ଶାସ୍ତ୍ର ଏହା ଲେଖେ ।। ବୃହସ୍ପତି ଯେବେ ସପ୍ତମ ଗୃହରେ ସ୍ଥିତ । ଶିଶୁକାଳୁ ଗୀତ ନୃତ୍ୟବାଦ୍ୟ ଅନୁରକ୍ତ । ନାନା ବିଦ୍ୟା ଅଭ୍ୟାସଇ ମୁଖରେ ତାହାର । ବୃହସ୍ପତିତୁଲ୍ୟ

ପ୍ରବେଶେ ଶଖର । ଯାହାଁଯ୍ୟୁ ହୁଅଇ ସେହୁ ମାନବ ନଷ୍ଟପ୍ର । ଖନା
ବୋଲେ ମନେ କରୁ ନକର ସଂଶୟ । ୨୪ ।

ଦୁଇଭବେ ଲୁଗ୍ରହ ମଧ୍ୟେ ଗୁରୁ ଅନେକ ଧନ ଅନେକ ଗୋରୁ ।
ଯଦ ଅସ୍ପର୍ଗ ନୃହଇ ରଜା, ଅନେକ ଲୋକେ ପାଏ ପୂଜା । ୨୫ ।
ଦୁଇପାଶେ ପାପଗ୍ରହମାନେ ଯେବେ ଥାଆନ୍ତି । ମଧ୍ୟରେ ଯଦ୍ୟପି
ସ୍ଥିତ ହୁଏ ବୃହସ୍ପତ । ସେ ପ୍ରାଣୀକ ନହୁତ ବଉ ଲାଭ ହୁଅଇ ।
ଧନ ରତ୍ନେ ପରିପୂର୍ଣ୍ଣତା ଗୃହ ଅଟଇ । ଲଗ୍ନଦୋଷେ ଯେବେ ସେହୁ
ନୃପତି ନ ହୁଏ । ତଥାପି ବହୁତ ଲୋକେ ମଧ୍ୟେ ପୂଜା ପାଏ । ଏବଂ
ଜ୍ଞାନ ବଳେ ସର୍ବ ପ୍ରାଣୀଙ୍କି ମେହଇ । ଧର୍ମ କାର୍ଯ୍ୟ ତାର ଚଉ
ମତ ସଦା ଥାଇ ॥ ଖନା ବୋଲେ ଏ ବଚନ ନୁହେଁ କେବେ
ଆନ । ସୂଜ୍ଞଜନେ ବୁଝ ଶୁଦ୍ଧାଶୁଦ୍ଧ ଫଳମାନ । ୨୫ ।

ଲଗ୍ନ ଚତୁର୍ଥେ ସାତ ଦଶେ, ପାପଗ୍ରହେ ଶୁଭ ଯେବେ ବସେ ।
ଦୋଳା ଘୋଡ଼ା ଅନେକ ହସ୍ତୀ, ଏହମାନକ ରଜମନ୍ତ୍ରୀ । ୨୭ ।

ଚତୁର୍ଥେ ସପ୍ତମେ ଦଶମେ ଜନ୍ମ ଲଗ୍ନରେ । ପାପଗ୍ରହ ନ
ଥାଇଣ ଶୁଭଗ୍ରହ ସ୍ଥିତ ହେଲେ । ଯାନବାହାନରେ ଜାତ ବ୍ୟକ୍ତି
ଆନନ୍ଦିତ । ହସ୍ତୀ ଅଶ୍ୱ ଆଦ ବହୁ ହୁଅଇ ପ୍ରାପତ । ରଜମନ୍ତ୍ରୀ
ପଣେ ବସେ ହରଷ ହୋଇଣ । ଧନରେ କୁବେର ତୁଲ୍ୟ ସେହୁ ଅଟଇ
ପୁଣ ॥ ଧନ ରତ୍ନାଦରେ ତାର ଗୃହେ ପୂର୍ଣ୍ଣ ହୁଏ । ମିହରଙ୍କ
ଅଗ୍ରତରେ ଖନା ଏହା କହେ ।

ପାପାପାପ ଲଗ୍ନରେ ପାଶେ, ଯଦି ଗୁରୁ ସାତେ ଦଶେ ॥
ଅନେକ ପ୍ରକାରେ ପାଉଇ କଷ୍ଟ, ବାପର ପୀଡ଼ା ସବୁକାଳେ ହୋଇ ।

ଲଗ୍ନ ସଙ୍ଗେ ଶୁଭ ପାପ ମିଶି ରହିଥିବେ । ସପ୍ତମେ କବା
ଦଶମେ ବୃହସ୍ପତି ଯେବେ । ତେବେ ସେ ମାନବ ବହୁବାଧ୍ୟ ଉତା-
ରଇ । କଥା ଛଳେ ପ୍ରାଣୀଙ୍କ ମନକୁ ଘାରେ ମୋହ ॥ କହିବା

ବୋଲିବା ଅତି ସୁନ୍ଦର ହୁଅଇ । ଅଲଙ୍କାରବ୍ୟା ପଢ଼ି ମଧ୍ୟ ଯଶ ଅରଜଇ ॥ ବହୁ କାଳେ ପିତୃକେ୍ଣ ଲଭଇ ନସ୍ୟତ । ସୁପଣ୍ଡିତ-ମାନେ ଶୁଣ ସ୍ଥିର କର ଚିତ୍ତ । ୨୭ ।

ଲଗ୍ନେ ବୁଧ ଆରୋଗ୍ୟ ଶରୀର, ଶିଶୁକାଳୁ ବୁଦ୍ଧି ସ୍ଥିର ।

ସର୍ବଲୋକେ ଲଗ୍ନେ ବୁଧ ଅବସ୍ଥିତ ଯାର ॥ ସେ ପ୍ରାଣୀର ସବୁ ଦିନେ ଆରୋଗ୍ୟ ଶରୀର ॥ ଶିଶୁକାଳଠାରୁ ତାର ବୁଦ୍ଧି ଅଟେସ୍ଥିର ।
ସକଳ ଲୋକରେ ଲଭେ ନଅନ୍ତର । ଯେଣେ ଇଚ୍ଛା ତେଣେ ସେହୁ ଲଭେ ମାନ ଯଶ । ଦିନୁ ଦିନୁ ବଢ଼େ ତାର ଯଶ ପରିତୁଷ ॥ ପଣ୍ଡିତ ହୋଇଣ ସର୍ବ ଶାସ୍ତ୍ର ସେ ଜାଣଇ । କବିତ୍ୱ ବଳରେ ନାମ ଜଗତେ ଫେରଇ । ମୂର୍ଖମାନେ ଏମନ୍ତ ପ୍ରାଣୀଙ୍କୁ ନଚିହ୍ନନ୍ତି । ଅହଙ୍କାର ଅସତ୍ୟରେ ସଦା ମାତି ଥାନ୍ତି । ଖନା କହନ୍ତି ଏ କଥା ସ୍ୱାମୀଙ୍କ ଆଗରେ ସୁଜ୍ଞଜନମାନେ ଏହା ଚିନ୍ତ ହୃଦସ୍ୟରେ । ୨୮ ।

ଜୃଷାସ୍ଥରେ କେତୁ ଗୁରୁ ଗୃହରେ, ସ୍ଥିତ ହେଲେ ନାଶ ସହୋଦରେ ଅନସ୍ତ ଚିନ୍ତ ନ କରେ ତାହା, ଦୁଃଖୀର ଦୁଃଖେ ବୋଲି ଆହା ॥

ଧନ ଜନ୍ମା ମାନରେ କେତୁ ଯେବେ ରହଇ ଲଗ୍ନରୁ ତୃତୀୟ ସ୍ଥାନ ଯେବେ ସେହୁ ହୋଇ । ଭ୍ରାତୃହାନ ସେ ପ୍ରାଣୀର ହୁଅଇ ନଷ୍ଟପ୍ରାୟ ॥ ଭଗିନୀ ଅଳପ ଥାଇ ନୁହେଁ ସୁଖମୟ । ପରର ଅନସ୍ତେ ସେହୁ ଧ ବଳାଏ ମତି । କାର୍ଯ୍ୟରେ ନ କରେ ଯେବେ ଚିନ୍ତ ଥାଏ ଚିନ୍ତ ॥ ପରଦୁଃଖ ଦେଖିଣ ସେ ଆହା ବୋଲୁଥାଇ । ପର ପାଇଁ ଚିନ୍ତ ॥ ପରଦୁଃଖ ଦେଖିଣ ସେ ଆହା ବୋଲୁଥାଇ । ପର ପାଇଁନଜ ମନପ୍ରାଣ ସମର୍ପଇ ॥ ପରକୁ ବିପଦେ ନ ପକାଏ କେତେ କେଳେ । ପର ଦୁଃଖେ ଦୁଃଖି ହୋଇ ସଦାକାଳେ କାଳେ । ୨୯ ।

ପଞ୍ଚମେ ଚନ୍ଦ୍ର ଅଙ୍କ ସୁନ୍ଦର, କରଇ ନାନା ଶାସ୍ତ୍ର ବିସ୍ତର ।

ଶନିର ଗୃହ ସେ ଯେବେ ହୋଇ, ବୁଦ୍ଧିମେଧାହାନ ଖନା କହି ।

ଜନ୍ମ ଲଗ୍ନଠାରୁ ଚନ୍ଦ୍ର ପଞ୍ଚମ ସ୍ଥାନରେ । ଯେବେ ରହିଥାଇ ଶୁଭ କରଇ ଶସ୍ତରେ ।। ଅତ୍ୟନ୍ତ ସୁନ୍ଦର ଅଙ୍ଗସେ ପ୍ରାଣୀର ହୁଏ । ନାନା ଶାସ୍ତ୍ର କଥା ବସ୍ତୁରରେ ବଦନଏ ।। ମକର ବା ଅବା କୁମ୍ଭ ଯେବେ ସେ ଅଟଇ । ଅଳ୍ପ କୁଟୁମ୍ବରେ ସେ ପ୍ରାଣୀର ଦିନ ଯାଇ । ଖନା କହେ ଏ ବଚନ ନୁହେଁ କେବେ ଆନ । ସତ୍ୟ ବୋଲି ସୁଜ୍ଞଜନ ମାନେ ମନେ ଘେନ । ୩୦ ।

ଷଷ୍ଠେ ଶନି ବହୁତ ଦୋଷ, କେବଳ ନିଜ ଦାସ୍ୟ ନାଶ ।
ମାନେ ଯଦି ରହଇ ଜାଣ, ସୁଖ ହେବ ଅଳ୍ପଦିନେ । ୩୧ ।

ଷଷ୍ଠରେ ଶନି ରହିଲେ ମହାଦୋଷ ହୋଇ । ନିଜ ଜାଯା ନାଶ ବୋଲି ଶାସ୍ତ୍ରରେ ଅଛଇ । ଯଦି ସ୍ୱେଚ୍ଛ ଶନିମାନେ କରେ ଶବସ୍ଥିତି ତେବେ ସୁଖହୁଏ ତାର ଅଳ୍ପ ଦିନ ମାତ୍ର । ଖନାର ବଚନ ଏହା ଅନ୍ୟଥା ନୁହଇ । କୋଷ୍ଠୀ ଦେଖି ଶୁଭାଶୁଭ ଫଳ କୁହ ଯାଇ ।୩୧।

ସହୁ ନବମେ ହେଲେ ସ୍ଥିତ, ଅଟଇ ମହା ଭାଗ୍ୟବନ୍ତ ।
ବୁଧ ଗୃହରେ ଯେବେ ରହି ପରଅଧୀନ କେବେନୋହି ।୩୨।

ନବମ ସ୍ଥାନରେ ସହୁ ଯେବେ କରେ ବାସ । ତେବେ ମହା-ଭାଗ୍ୟବନ୍ତ ହୁଏ ସେ ପୁରୁଷ । ମିଥୁନ କିବା କନ୍ୟାରେ ଯେବେ ସେ ରହଇ । ସ୍ୱାଧୀନ ବୃତ୍ତିରେ ତାର ଚଉକାଳ ଯାଇ ।। ପର ଅଧିନେ ସେ ପ୍ରାଣୀ ନୁହଇ କେବେହେଁ । ସୁଖ ଭୋଗ ଲଭ କରି ଆନନ୍ଦିତ ହୁଏ । ମନରେ ନଷ୍ଟିତଗ୍ରହ ଲକ୍ଷଣ ନିଶ୍ଚିତ । ଖନା କହେ ସଦା-କାଳେ ତାର ହର୍ଷଚିତ୍ତ । ୩୨ ।

ଲଭେ ପୁତ୍ର ତପନ ଘରେ, ଭାର୍ଗବ ସଙ୍ଗେ ସଙ୍ଗେ କରେ ।
ବଦ୍ୟା ବୁଦ୍ଧିରେ ଅର୍ଜେ ଧନ କରଇ ବହୁ ଦାନ ପୁଣ୍ୟ ।।

ଏଇ ବିଦ୍ୟା ସ୍ଥାନରେ ରହେ, ସକଳ କର୍ମ ଫିଙ୍ଗି ଦିଏ ।
ଲୋକରେ ମାନ୍ୟ ଲଭେ ନିତି, ଖନା କହେ ବଚନ ଗାଣ୍ଠି ।୩୩।

ଏକାଦଶ ସ୍ଥାନେ ରବି ଗୃହେ ବୃହସ୍ପତି । ଶୁକ୍ର ସଙ୍ଗେ ଯେବେ କରିଥାଏ ଅବସ୍ଥିତି ॥ ବିଦ୍ୟା ବୁଦ୍ଧିରେ ପ୍ରବୀଣ ସେ ପ୍ରାଣୀ ହୁଅଇ । ଶାସ୍ତ୍ର ଚର୍ଚ୍ଚାରେ ହେବ, ଧନ ଅରଜଇ ॥ ବହୁ ଦାନ ପୁଣ୍ୟ ସେହୁ କରଇ ନସ୍ତୁତ । ତେଣୁ ବେଳେବେଳେ ହୁଏ ସେହୁ ଶୂନ୍ୟହସ୍ତ । ଅନ୍ୟ ସକଳ କର୍ମକୁ ଦୂର ପରିହରି । ଏକଇ ବିଦ୍ୟାକୁ ସବାକାଳେ ମନେ ଧରି । ଶୀଘ୍ରା ନିବାହ କରେ ମହାଆନନ୍ଦରେ । ସବୁଠାରୁ ପୂଜା ସେହୁ ଲଭେ ନିରନ୍ତରେ । ସକଳ ଜନେ ଆଦର କରନ୍ତି ତାହାକୁ । ମନକଥା କେଉଁଦିନ ନ କହେ କାହାକୁ ॥ ଖନା ବୋଲେ ତାର ଯଶ ଖ୍ୟାତି ଦିନୁଦିନ ସଂସାରେ ବ୍ୟାପଇ ହେବୁକର ସଜ୍ଜନ ।୩୩।

ବାଦ୍ୟେ ରବି ମଙ୍ଗଳ ସଂଗେ, ନାନା ଗୀତ ରଚେ ରଂଗେ ।
ଧର୍ମ ସ୍ଥାନରେ ଧନ ଯାଏ, ଅଧର୍ମେ କଉଡ଼ିମାତ୍ର ନ ଦିଏ ।୩୪।

ଦ୍ୱାଦଶରେ ଯେବେ ରବି ସଂଗରେ । ଜନ୍ମକାଳୁ ସ୍ଥିତ ହୋଇଥିବ ନିରନ୍ତରେ ॥ ସେ ବ୍ୟକ୍ତି ବହୁସ୍ଥାନରେ ରଚେ ନାନା ଗୀତ । ପ୍ରାଣୀମାନେ ଶୁଣି ତାହା ହୁଅନ୍ତି ମୋହିତ । ଧର୍ମକାର୍ଯ୍ୟେ ବହୁ ଧନ ବ୍ୟୟ ସେ କରଇ । ଅଧର୍ମ କାର୍ଯ୍ୟରେ ଏକ କଉଡ଼ି ଯେ ନ ଦେଇ ॥ ବଡ଼ ଭାଗ୍ୟବନ୍ତ ବୋଲି ତାହାକୁ ଜାଣିବ । ଖନାର ବଚନ କାଳେ କାଳେ ଅଟେ ଧ୍ରୁବ ।୩୪।

ଚନ୍ଦ୍ର ବୁଧ ଶୁକ୍ର ଏକ ଘରେ, ଥିଲେ ଶିଶୁକାଳୁ ପୁଣ୍ୟ କରେ ।
ଯଦି ଗୁରୁ କର୍କଟେ ସ୍ଥିର, କାଶୀଲଭ ପୁଣ୍ୟ ଶରୀର ।୩୫।

ଚନ୍ଦ୍ର ବୁଧ ଶୁକ୍ର ଯେବେ ଏକ ଗୃହେ ଥାନ୍ତି । ଶିଶୁକାଳୁ ତାଙ୍କୁ ପୁଣ୍ୟବନ୍ତ ଯେ କହନ୍ତି । ଜୀବନରେ ତାର ବହୁପୁଣ୍ୟ କର୍ମ କରେ ।

ତାହାର ଯଶ ଗୁଣାର ଜଗତେ ପ୍ରଚରେ ॥ ବୃହସ୍ପତି ଯେବେ ସ୍ଥିତ କର୍କଟ ରାଶିରେ । କାଶୀଧାମେ ମୃତ୍ୟୁଲଭି ଶାସ୍ତ୍ର ବଚନରେ ॥ ବହୁ ପୁଣ୍ୟଜନ୍ମ ବୋଲି ତାହାଙ୍କୁ ଜାଣିବ । ଖନାବଚନକୁ କେବେ ମିଥ୍ୟା ନ ମଣିବ ।୩୫।

ଅଷ୍ଟମ ସ୍ଥାନେ ଗୁରୁର ବାସ, ଉଚ୍ଚ ଯଦି ଥାଏ ତା ପାଶ ।
ଲଗ୍ନେ ଚନ୍ଦ୍ର, ଲଗ୍ନେ ଶୁକ୍ର, ମରଣ କାଳେ ପାଏ ଗଙ୍ଗା ।୩୬।

ଅଷ୍ଟମରେ ବୃହସ୍ପତି ଉଦୟଥାଇ ଯାର । ତାହାର ସଙ୍ଗତେ ଯେବେ ଥାଏ ଶନିକର ॥ ଲଗ୍ନରେ ଚନ୍ଦ୍ର ଉଦଇ କନ୍ୟା ଶୁକ୍ରଥାଏ । ସେ ପ୍ରାଣୀ ନିଶ୍ଚୟେ ଗଙ୍ଗା ମୃତ୍ୟୁ ଯୋଗପାଏ ॥ କଳିଯୁଗେ ଗଙ୍ଗାତୀର୍ଥ ଅଟଇ ପ୍ରଧାନ । ସେ ତୀର୍ଥେ ଯେ ତେଜଇ ପ୍ରାଣ ଧନ୍ୟ ତା ଜୀବନ ଜୀବ ଯିବାବେଳେ ଯେବେ ଗଙ୍ଗା ଯୋଗ ପାଇ । ତାହାର ପୁଣ୍ୟ ଯେତେ କହିଲେ ନ ସରଇ ।୩୬।

ଜନ୍ମ ନକ୍ଷତ୍ର ତିଥିବାର, ପାଞ୍ଚ ମିଶାଇ ତହିଁ ସାର ।
ତିନିରେ ହରନ୍ତେ ଯେତେ ଉଦ୍ଧେ, ସେହି ପ୍ରକାରେ ଗଂଗାପାଏ ।
ଏକ ଶୂନ୍ୟରେ ସରୋବର, ଦୁଇରେ ଗଙ୍ଗା ଅନ୍ତର୍ଜଳ ।୩୭।

ଗଙ୍ଗା ମୃତ୍ୟୁଯୋଗ ଏବେ ଶୁଣ ମନଦେଇ । ଯାହାର କୋଷ୍ଠୀରେ ସେହି ଯୋଗ ଥିବ ଉଦ୍ଧ । ଗଙ୍ଗା ବୋଲନ୍ତେଣ ଜନଅଛୁ ସବୁଠାରେ ଖନା ବାକ୍ୟମତେ ଗଣି ବୁଝିବ ସ୍ୱଭାବରେ । ଜନ୍ମ ନକ୍ଷତ୍ର ସଙ୍ଗରେ ତିଥି ଯୋଗକରି । ଜନ୍ମବାରକୁ ମିଶାଇ ଯେତେ ହେଲ ଧରି । ତହିଁରେ ପାଞ୍ଚ ମିଶାଇ ତିନିରେ ହରିବ । ଅବଶିଷ୍ଟକୁ ଦେଖିଣ ଫଳ ବଖାଣିବ । ଶୂନ୍ୟ କମ୍ବା ଏକ ଯଦି ଉଦ୍ଧେ ଅବଶେଷ । ସରୋବର କୂଳେ ତାର ହୁଏ ପ୍ରାଣନାଶ ॥ ଦୁଇଯଦି ଅବଶିଷ୍ଟ ରହଇ ନିକର । ଜାଣିବ ଗଙ୍ଗାକୂଳରେ ମରଣ ତାହାର । ଏମନ୍ତ ବୁଝିଣ ପ୍ରାଣୀମାନଙ୍କୁ କହିବ । ଖନାବାକ୍ୟ ତେବେ ଯିନା ଯଶ ଅର୍ଜିବ ।୩୭।

ଚନ୍ଦ୍ର ବୁଧ ଲଗ୍ନ ପୂର୍ବେ, ମନ୍ଦ ଗୁରୁ ସାତେ ବସେ
ରବି ଶୁକ୍ର ଅଷ୍ଟମେ ମିଳଇ. ଅବଶ୍ୟ ହୁଏ ପ୍ରୟାଗ ମୃତ୍ୟୁ । ୩୮ ।

ଲଗ୍ନ ସମ୍ବତରେ ଯେବେ ଚନ୍ଦ୍ର ବୁଧ ଥାନ୍ତି ପ୍ରଥମେ କମ୍ବା ଦଶମେ ଥିଲ ବୃହସ୍ପତି । ରବି ଶୁକ୍ର ଦୁହେଁ ଯେବେ ଅଷ୍ଟମରେ ସ୍ଥିତି । ପ୍ରୟାଗକ୍ଷେତ୍ର ଲଭଇ ସେ ପ୍ରାଣୀ ନିଶ୍ଚିତ ॥ ପୂର୍ବ ଜନ୍ମାଥିଲେ ମୃତ୍ୟୁପୂର୍ବ ସେ ତୀର୍ଥରେ । ପ୍ରବେଶ ହୁଏ ମାନବ ମହା ଆନନ୍ଦରେ ତୀର୍ଥ ମୃତ୍ୟୁ ଯୋଗ ଏବେ ହୋଇଲା ବର୍ଣ୍ଣନା । ଖନା ବଚନକୁ ବୁଝି ଯେନ ସୁଜ୍ଞଜନ । ୩୮ ।

ସପ୍ତଶୂନ୍ୟ ବହୁତର ପାପ, ଚକ୍ଷିରେ ରକ୍ଷା ନାହିଁରେ ବାପ ।
ଦଶ ଖେଳେ ନଳରେ ହଂସା, ଉଡ଼ଣ ଯୁସ୍ତାଣ କରେ ହଂସା ।

ମାନବର ଯେଉଁ ବର୍ଷ ସପ୍ତଶୂନ୍ୟ ହେବ । ସେହି ବର୍ଷ ନଷ୍ଟେ ବହୁ ଯାତନା ଲଭିବ ଯେବେ କଳିଣସି ମତେ ଅଙ୍ଗେ ନ ବାଧଇ ଦଶ ଖେଳେ ଜଳକୁକେ ବନ ଯାଏ ବହି ॥ ତେବେ ଅବସ୍ଥାରେ ମୃତ୍ୟୁ ହୋଇଣ ଜାଣିବ । କଷ୍ଟ ଲଭୁଥିଲେ ପ୍ରାଣେ ବନାଶ.ହୋଇବ । ଯାହା ଅଙ୍ଗେ ସେ ବରଷ କଷ୍ଟ ନୁହେଁ ଜାତ । ଜାଣିବ ତାହାର ନଷ୍ଟେ ହେବ ପ୍ରାଣନ୍ୟୁନ । ୩୯ ।

ଶନି ବୁଧ ଦୁଇ ଭୂଜ ଯେବେ ବସେ;
ଲେଖନ୍ତେ ବଣ ଶୂନ୍ୟ ଯେବେ ଆସେ ।
ରବି ଶନି ମଙ୍ଗଳ ହିସାବେ ଗଣନା,
ସେହି ବର୍ଷେ କାଳ ପୂର୍ଣ୍ଣ କହେ ଖନା ।୪୦।

ଶନି ବୁଧ କିମ୍ବା ଦୁଇ ମଙ୍ଗଳ ହୋଇବ । ସେହି ବର୍ଷ ଦଶ ଶୂନ୍ୟ ଯେବେ କ ପଡ଼ିବ ॥ ଶନି ରବି ମଙ୍ଗଳ କଅଥବା ତାଙ୍କଠାରୁ । ସପ୍ତଶୂନ୍ୟ ଯୋଗ ହେଲେ ନଷ୍ଟେ କାଳ ଭୟ ॥ ଏହି ଅନୁକ୍ରମେ ମୃତ୍ୟୁ ନିର୍ଣ୍ଣୟ କରିବ । ଖନା କହେ ଏ ବଚନ ଅନ୍ୟଥା ନୋହିବ ॥

ମିହିର ଏ କଥା ଶୁଣି ଲେଖିଲେ ଯତନେ । ଏହାକୁ ଅଭ୍ୟାସ ନିତ କର ସୁଜ୍ଞଜନେ ॥ ଶୂନ୍ୟରେ ବ୍ରହ୍ମକର୍ମକୁ ନେଇ ମିଶାଇବ । ନବାସ ଘଟଣ ମନେ ହରଷ ହୋଇବ । ଲକ୍ଷ୍ମୀପତି ନବ ଜଳଧର ଶୋଭା ବଣି ॥ ଯେ ସ୍ୱାମୀ ଜଗତପତି ନିତ୍ୟ ଅବିନାଶୀ । ତାଙ୍କ କରୁଣାରେ ଏହା ଲେଖିଅଛି ମୂର୍ଖି । ଦିନ ବଇଦଙ୍କ ଶ୍ୟାମସୁନ୍ଦର କହଇ ॥

—o—

# ପଞ୍ଚମ ଅଧ୍ୟାୟ

## ନବଗ୍ରହଙ୍କ ଶୁଭଫଳ ବର୍ଣ୍ଣନ

## ରବିଫଳ

ମିହିରଙ୍କୁ ଖନା ଡାକ କହୁଅଛି ଗ୍ରହ ଶୁଭାଶୁଭ ଫଳ ।
ନବଗ୍ରହଙ୍କର ଫଳମାନ ଲେଖ ଆଉ ନାହିଁ କେଣୀ କେଳ ।୧।
ରବି ଜନ୍ମ ହେଲେ ଶତ୍ରୁ ବୃଦ୍ଧି କରେ ଦ୍ୱିତୀୟେ ବନ୍ଧୁ ବିଚ୍ଛେଦ ।
ତେର ଦିନ ପରେ ଶୁଭ ଫଳ ଫଳେ ମନେ ବଢ଼ଇ ବିଷାଦ ।୨।
ତୃତୀୟେ ଅଭୀଷ୍ଟ ପ୍ରାପତ ନିଶ୍ଚୟେ ଚତୁର୍ଥେ ଦୁଃଖ ପ୍ରମାଦ ।
କହୁ ପରକାରେ ଧନ ବ୍ୟୟ କରେ ମିତ୍ର ସଙ୍ଗେ ଘଟେ ବାଦ ।୩।
ପଞ୍ଚମ ହୋଇଲେ ତେରଟି ଦିନରେ ଅଳ୍ପ ଶୁଭ ପ୍ରକାଶଇ ।
ବନ୍ଧୁ ମିତ୍ର ନାଶ ହୁଅନ୍ତି ଅବଶ୍ୟ ଷଷ୍ଠରେ ଧନ ମିଳଇ । ୪ ।
ସପ୍ତମେ ଅଷ୍ଟମେ ସବୁ କାର୍ଯ୍ୟ ମାନ ବିନାଶ ହୁଅଇ ଭଲେ ।
ନବମ ରବିରେ ଶୁଭଫଳ ଫଳେ ତ୍ରୟୋଦଶ ଦିନ ପରେ । ୫ ।
ଦଶମରେ କାର୍ଯ୍ୟ ସିଦ୍ଧି ଯେ ହୁଅଇ ଏକାଦଶେ ସୁଖଲାଭ ।
ଦ୍ୱାଦଶରେ ବଧ ବନ୍ଧନାଦି ଦୋଷ ପ୍ରବେଶି ମନରେ କ୍ଷୋଭ ।୬।
ମରଣ କାଳରେ ମିହିର ଆଗରେ ଖନା କହୁଛି ଏପରି ।
କ୍ଷେତ୍ରବାସ ନିବାସୀ କେଣୀ ଶ୍ୟାମଦେ ଜ୍ୟୋତିଷ ଶାସ୍ତ୍ର ବିଚାର ।୭।

## ଚନ୍ଦ୍ର ଫଳ

ଜନ୍ମଚନ୍ଦ୍ର ହେଲେ ମିଷ୍ଟାନ୍ନ ଭୋଜନେ ପ୍ରାଣୀ ଶତ୍ରୁ ଥାଏ ଘରିର
କୃଷ୍ଣପକ୍ଷେ ଦ୍ୱିତୀୟଚନ୍ଦ୍ର ହୁଅନ୍ତେ ମନକୁ କରେ ବ୍ୟାକୁଳ ।୧।
କୃଷ୍ଣପକ୍ଷ ହୋଇଲେ ଦ୍ୱିତୀୟ ଚନ୍ଦ୍ରରେ ଶୁଭଫଳ ହୁଏ ଜାତ ।
ତୃତୀୟରେ ରାଜସମ୍ମାନ ମିଳଇ ଶତ୍ରୁ ନାଶ ସୁନିଶ୍ଚିତ ।୨।
ଚତୁର୍ଥେ ଉଦର ପୀଡ଼ା ନିରନ୍ତର ଶୁକ୍ଳପକ୍ଷରେ ପ୍ରମାଣ ।
କୃଷ୍ଣପକ୍ଷ ହେଲେ ସଉଭାଗ୍ୟ ମିଳେ ଆଦର ପ୍ରାପତ ମାନ ।୩।
ପଞ୍ଚମରେ ଧନ ହାନି ମନକ୍ଳେଶ କୃଷ୍ଣପକ୍ଷ ଯେବେ ଥାଇ ।
ଶୁକ୍ଳପକ୍ଷ ହେଲେ ଆସି ବଳେ ବଳେ ନଷ୍ଟ ଦ୍ରବ୍ୟ ମିଳଯାଇ ।୪।
ଷଷ୍ଠଚନ୍ଦ୍ର ହେଲେ ଧନ ଧାନ୍ୟ ମିଳେ ଶତ୍ରୁ ବିନାଶ ନିକର ।
ସପ୍ତମରେ ନାନା ସୁଖ ଭୋଗ ହୁଏ ଅଷ୍ଟମେ ପୀଡ଼ା ଶରୀର ।୫।
କୃଷ୍ଣପକ୍ଷରେ ନବମ ଚନ୍ଦ୍ର ହେଲେ ଶରୀରେ ଜନ୍ମଇ କ୍ଳେଶ ।
ହେଲେ ଶୁକ୍ଳପକ୍ଷ ଶୁଭଫଳ ଦେଖି ମିଳେ ଧନ ମାନ ଯଶ ।୬।
ଚନ୍ଦ୍ର ଦଶମରେ ଅତି ଯତନରେ ସବୁ କାର୍ଯ୍ୟ ସିଦ୍ଧ ହୁଏ ।
ଏକାଦଶେ ସଉଭାଗ୍ୟ ବୃଦ୍ଧି ମିଷ୍ଟବଚନ ଶୁଣାଏ ।୭।
କୃଷ୍ଣପକ୍ଷ ଯେବେ ଚନ୍ଦ୍ରମା ଦ୍ୱାଦଶ ହୁଏ କେବଳ ପ୍ରାଣୀର ।
ବହୁ ପରକାରେ ଯଶ ଲାଭ କରୁଥାଇ ନିରନ୍ତର ।
ଯେବେ ଶୁକ୍ଳପକ୍ଷ ହୁଅଇ ପ୍ରତ୍ୟକ୍ଷ ତେବେ ବ୍ୟୟ କରେ ଜାତ
ଖନା ବାକ୍ୟ ଶ୍ୟାମ ଲଖନ କରନ୍ତି ଜ୍ୟୋତିଷ ଶାସ୍ତ୍ରର ମତ ।୮।

## ମଙ୍ଗଳ ଫଳ

ମଙ୍ଗଳ ଜନମ ହୋଇଲେ ଜାଣିଣ ସକଳ କଥାକୁ ଭୟ ।
ଶତ୍ରୁକର୍ମ ବଳେ ଅଶୁଭ ହୁଅଇ ଦ୍ୱିତୀୟରେ ଧନକ୍ଷୟ ।୧।
ତୃତୀୟରେ କାର୍ଯ୍ୟସିଦ୍ଧି ହୋଇ ପୁଣ ଯଶ ହୁଏ ପରଗତ ।
ଚତୁର୍ଥରେ ଶତ୍ରୁ ବୃଦ୍ଧି ଯେ ନିଶ୍ଚୟ ପଞ୍ଚମେ ଶତ୍ରୁ ନିପାତ ।୨।

ଷଷ୍ଠ ମଙ୍ଗଳରେ ମହା ଆନନ୍ଦରେ ମାନବେ କାଟନ୍ତି କାଳ ।
ସପ୍ତମ ପ୍ରବେଶ ହୁଅନ୍ତେ ଅବଶ୍ୟ କରନ୍ତି ଆତ୍ମା ବକଳ । ୩ ।
ଅଷ୍ଟମରେ ଅଙ୍ଗେ ପୀଡ଼ା ଉପୁଜଇ ମଙ୍ଗଳ ଗ୍ରହରେ ଜାଣ ।
ନବମରେ ସବୁ କାର୍ଯ୍ୟ ହୁଏ ନାଶ ଦଶେ ସୁଖ୍ୟାତି ଅର୍ଜନ । ୪ ।
ଏକାଦଶେ ନାନା ଫଳ ହୁଏ ଦ୍ୱାଦଶେ ବ୍ୟଧି ପ୍ରବଳ ।
ଖନାବାକ୍ୟ ଶ୍ୟାମସୁନ୍ଦର କହଇ ବୃଷ୍ଟି ସୁବହେଳା କର । ୫ ।

## ବୁଧଫଳ

ବୁଧ ଜନ୍ମ ହେଲେ ବନ୍ଧନ ଦଶାରେ ପ୍ରାଣୀଏ କଷ୍ଟ ଲଭନ୍ତି ।
ଦ୍ୱିତୀୟେ ବଡ଼ ଧନ ଦାନ କରେ ଧର୍ମ ପଥେ ହେଇ ମତି । ୧ ।
ତୃତୀୟରେ ଅପମାନ ଅନୁକ୍ଷଣ ଚତୁର୍ଥରେ କାର୍ଯ୍ୟ ସିଦ୍ଧି ।
ପଞ୍ଚମରେ ଦୁଃଖ ଷଷ୍ଠେ ନାହିଁ ସୁଖ ସପ୍ତେ ସୁଖ ଯୋଗ ଆଦି । ୨ ।
ସପ୍ତମରେ ଦେହେ ପୀଡ଼ା ଉପୁଜଇ ଅଷ୍ଟମରେ ଧନ ଲାଭ ।
ନବମରେ ମହାକଲ୍ୟାଣ ହୁଏ ଜାତ ଘରେ ଏକାଦଶେ ମିଳେ ଧନ ।
ଦ୍ୱାଦଶରେ ମତି ଅସ୍ଥିର ହୁଅଇ ଶ୍ୟାମ କହେ ବୁଝେଁ ଆନ । ୪ ।

## ବୃହସ୍ପତି ଫଳ

ବୃହସ୍ପତି ଜନ୍ମ ହେଲେ ସ୍ଥାନ ନାଶ ଆଦର ମନରେ ଭୟ ।
ଧନ ଜନ ମାନ ଯଶ ପରାଗତ ଦ୍ୱିତୀୟ ଜାଣ ନିଶ୍ଚୟ । ୧ ।
ମିଥ୍ୟା ଅପବାଦ କଳହାଦି କେତେ ତୃତୀୟରେ ଉପୁଜଇ ।
ଚତୁର୍ଥରେ ଧନହାନି ପ୍ରାଣ ପୀଡ଼ା ବିଦ୍ୟା ବୁଦ୍ଧି ନାଶ ଯାଇ । ୨ ।
ପଞ୍ଚମରେ ପୁତ୍ର ସ୍ୱର୍ଣ୍ଣ ସମ୍ପଦ ଷଷ୍ଠରେ କଷ୍ଟ ନକର ।
ସପ୍ତମ ଭବନେ ବସିଲେ ଗୁରୁ ସୁଖ ମିଳଇ ଅପାର । ୩ ।

ଅଷ୍ଟମରେ ନାନାରୋଗ ହୁଏ ଜାତ ଆଦର ନାଶଇ ଧନ ।
ନବମେ ସୁଖ ସୌଭାଗ୍ୟ ମିଳନ୍ତେଣ ଅତି ପ୍ରଫୁଲ୍ଲିତ ମନ । ୪ ।
ଦଶମରେ ମହା ସଙ୍କଟ ପଡ଼ଇ ପ୍ରାଣପୀଡ଼ା ଧନକ୍ଷୟ
ଏକାଦଶେ ଯଶ ସମ୍ପଦ ମିଳଇ ଦ୍ୱାଦଶରେ ବହୁ ବ୍ୟୟ । ୫ ।
ବୃହସ୍ପତି ବାର ରାଶି ଫଳ ଏମନ୍ତ ଘଟଇ ଜାଣ ।
ଗଣକ ଶ୍ୟାମସୁନ୍ଦର କହେ ଭାକ ପଣ୍ଡିତେ ମିଥ୍ୟା ନ ମଣ । ୬ ।

## ଶୁକ୍ର ଫଳ

ଜନ୍ମ ହେଲେ ଶୁକ୍ର କ୍ଷୟ କରେ ଶୁକ୍ର ଦ୍ୱିତୀୟରେ ସେହିପରି ।
ତୃତୀୟରେ ମହାଦୁଃଖ ଉପୁଜଇ ଦରିଦ୍ର ସଙ୍ଗରେ ସରି । ୧ ।
ଚତୁର୍ଥରେ ଶତ୍ରୁବୃଦ୍ଧି ମନ ଦୁଃଖ ପଞ୍ଚମେ ସମ୍ପଦ ନାଶ ।
ଷଷ୍ଠେ ଶତ୍ରୁ ବୃଦ୍ଧି ଦେହ ପୀଡ଼ା ଆଉ ସପ୍ତମରେ ଶୋକ କ୍ଲେଶ ।୨।
ଅଷ୍ଟମରେ କାର୍ଯ୍ୟସିଦ୍ଧି ନବମରେ ସକଳ ପଦାର୍ଥ ମିଳେ ।
ଦଶମ ହୋଇଲେ ଅତି କଷ୍ଟ ହୁଏ ଦେହରେ ପୃଥ୍ୱୀ ଗୃହରେ । ୩ ।
ଏକାଦଶେ ବହୁ ସମ୍ପଦ ମିଳଇ ଦ୍ୱାଦଶରେ ମିଳେ ଭୃତ୍ୟ
ଦଇବଜ୍ଞ ଶ୍ୟାମସୁନ୍ଦର କହଇ ଏକଥା ଜଗତେ ସତ୍ୟ । ୪ ।

## ଶନି ଫଳ

ଶନି ଜନ୍ମ ହେଲେ ପ୍ରାଣୀଙ୍କ ଶରୀରେ ନାନାକଷ୍ଟ ହୁଏ ଜାତ ।
ଧନ ଜନ ମନ ଅସ୍ଥିର ହୁଅଇ ତାହାକୁ ନ ମଣ ସତ୍ୟ । ୧ ।
ଦ୍ୱିତୀୟରେ ତହୁଁ କାହୁଁ ଜଣା ହୋଇ କଷ୍ଟଫଳ ମଧ୍ୟ ଜାଣ ।
ଅଳ୍ପ ସୁଖ ପ୍ରକାଶଇ ଶେଷବେଳେ ଭୃଗୁସ୍ୱେ ସୁଖ ପ୍ରମାଣ ।୨।
ଚତୁର୍ଥ ହୁଅନ୍ତେ ଶତ୍ରୁ ବୃଦ୍ଧି କରି ଚିତ୍ତକୁ କରେ ଅସ୍ଥିର ।
ଧନବ୍ୟୟ ପଞ୍ଚମରେ ନଷ୍ଟେ ହୋଇ ଷଷ୍ଠରେ ସୁଖ ଅପାର । ୩ ।
ସପ୍ତମ ଶନିରେ ସକଳ ବେଳରେ ପ୍ରାଣୀଙ୍କର ଦୁଃଖ ଜାତ ।
ଅଷ୍ଟମରେ ମହା ସୁକୃତ ଛାଡ଼ନ୍ତିରେ କ୍ଲେଶ ଉପୁଜେ ଅମୃତ । ୪ ।

ଧନମାନ ଜ୍ଞାନ ବିନାଶ ହୁଅଇ ନବମେ ଶନି ହୋଇଲେ ।
ଦଶମରେ ଶୁଭଫଳ ପ୍ରକାଶଇ ଏକାଦଶେ ରହେ ଭଲେ ।୫।
ଦ୍ୱାଦଶରେ ପୁଣି ଅଦ୍ଭୁତ ସଙ୍କଟ ପ୍ରାଣପୀଡ଼ା ଧନକ୍ଷୟ ।
ଶ୍ୟାମ କହେ ଏହା ଆଗରୁ ଜାଣିବ ଚିତ୍ତେ ନ ରଖ ସଂଶୟ । ୬ ।

## ରାହୁ କେତୁ ଫଳ

ରାହୁ କେତୁ ଫଳ ଶୁଣ ସୁଜ୍ଞନର ମନେ ହରଷିତ ହୋଇ ।
ଜନ୍ମ ବେଳେ ଧନ ମାନ ମନ୍ଦ ହାନି ଅଙ୍ଗେ ପୀଡ଼ା ପ୍ରକାଶଇ । ୧ ।
ଦ୍ୱିତୀୟ ହୋଇଲେ ନିତ୍ୟ ପ୍ରବାସରେ ପ୍ରାଣୀଙ୍କି ଭ୍ରମାଇ ଥାଇ ।
ତୃତୀୟ ସକଳ ସମ୍ବାଦ ମାନ ପାଶେ ଆସି ପ୍ରବେଶଇ । ୨ ।
ଚତୁର୍ଥରେ ଦେହପୀଡ଼ା ମନସ୍ତାପ ପଞ୍ଚମେ ଚିତ୍ତ ବ୍ୟାକୁଳ ।
ଷଷ୍ଠରେ ଅତ୍ୟନ୍ତ ସୁଖ ପରାପତ ଜାଣିଥାଅ ଚିରକାଳ । ୩ ।
ସପ୍ତମେ ନାନା ଭୟ ଉପୁଜଇ ଅଷ୍ଟମେ କାର୍ଯ୍ୟ ବିନାଶ ।
ଦେହପୀଡ଼ା ଆଦ ହୁଅଇ ତା ସଙ୍ଗେ ମାନହାନି ଅପଯଶ ।୪।
ନବମେ ସକଳ ଭୟ ଜାତ ହୁଏ ବୈର ଅଗ୍ନି ସର୍ପ ଆଦ ।
ମିତ୍ରବନ୍ଧୁ ନାଶ ଅଟଇ ଅବଶ୍ୟ ଅଶୁଭ ଫଳ ପ୍ରସିଦ୍ଧି । ୫ ।
ଦଶମରେ ଅଳ୍ପସୁଖ ପରାପତ ହୁଅଇ ପ୍ରାଣୀର ଜାଣ ।
ଏକାଦଶ ବେଳେ ସୁଖଲାଭ ବନ୍ଧୁ ମିତ୍ରେ ମିଳନ । ୬ ।
ଦ୍ୱାଦଶରେ ବହୁ ବହୁ କଷ୍ଟଜାତ ଜନ୍ମେ ସେ ଭଲେ ତାପିତ ପୁଣି
ଗଣକ ଶ୍ୟାମସୁନ୍ଦର ଗଣି କହେ ବୁଝି ସୁଚେତକ ପ୍ରାଣୀ ।୭।

## ହାଚ ( ଛିଙ୍କ ) ଓ ପଲ୍ଲୀ ହିଟିପିଟି ପତନର ଶୁଭାଶୁଭ ଫଳ

ପ୍ରାଣୀଙ୍କର ଯେ କୌଣସି କାର୍ଯ୍ୟବେଳେ ଅନ୍ୟଲୋକ ଛିଙ୍କି ଦେଲେ,
ଯେଉଁ କାର୍ଯ୍ୟ ଶୁଭ କି ଅଶୁଭ ହେବ ବୁଝାଇ କହିବା ଭଲେ ।୧।

ଆବର ପକ୍ଷୀପତନ ମାନବଙ୍କ ଯେ ଅଙ୍ଗରେ ଶୁଭାଶୁଭ ।
ତାହାର ସକଳ ଫଳ ସେହ୍ମପର ସ୍ପଷ୍ଟ ନ ବନ୍ଧୁ ଷୋଭି । ୨ ।
ଛୁଙ୍କ, ହିଁଟପିଟି ପଡ଼ିବାର ଫଳତ୍ୱ ଏକ ପରକାର ।
ଶୟନ, ଭୋଜନ, ଦାମ୍ପୋପବେଶନ ବିବାହେ ବିବାଦ ଆର । ୩ ।
ବସ୍ତ୍ର ପରିଧାନ ଯେବେ ଏଣୁ ସତ୍କର୍ମ ବେଳେ ପଡ଼ନ୍ତି ଯେବେ ।
ସକଳ ଅଶୁଭ ବିନାଶ ହୋଇଣ ଶୁଭ ପ୍ରକାଶଇ ତେବେ । ୪ ।
ବାଳକ ବୃଦ୍ଧ କି ଅବା ରୋଗୀ ଲୋକେ ଯେବେ ଛୁଙ୍କନ୍ତି ଜାଣିବ ।
ଶୁଭ ପରପତ ହୋଇବ ପ୍ରଶସ୍ତ ମନେ ଆନ ନ ଯେନିବ । ୫ ।
ଗୋରୁ ଛିଙ୍କିଦେଲେ କୌଣସି କାମରେ ଘଟେ ବହୁ ଅମଙ୍ଗଳ ।
ମରଣ ସମସ୍ୟା ପ୍ରଚେଶ ହେବାକୁ ଅଛି ଜାଣ ଅଳ୍ପକାଳ । ୬ ।
ଝଗ ଯେଣ କେନ ତଥାରୁ ସକଳ ଶୁଭ ଅଶୁଭ ବୁଝିବ ।
ଉର୍ଦ୍ଧ୍ୱ ସ୍ୱର୍ଗ ଯେବେ ପକ୍ଷୀ ଛୁଙ୍କ ଆଦ ପଡିଲେ ଶୁଭ ଜାଣିବ ।
ପୂର୍ବଦିଗେ କଦା ଅଗ୍ନି କୋଣ ହେଲେ ଉପୁଜଇ ମହାଭୟ ।
ଦକ୍ଷିଣ ଦିଗରୁ ହେଲେ ମହାଲୟ ଜାଣିବ ଅଟେ ନିଶ୍ଚୟ । ୮ ।
ନୈଋତ କୋଣରୁ ଏ ଦେନ ପଡ଼ିଲେ କଳହ ହୁଅଇ ଅତି ।
ପଶ୍ଚିମରେ ମହ ଲାଭ ଉପୁଜାଏ ତେଣୁ ହରଷିତ ମତି । ୯ ।
ବାୟୁ କୋଣରୁ ବସ୍ତ୍ର ମିଳଇ ବହୁତ ସୁଗନ୍ଧାଦି ଦ୍ରବ୍ୟମାନ ।
ପ୍ରାପତ ହୁଅଇ ଅତି ତଞ୍ଜନରେ ଯଶମାନ ଧନ ଜ୍ଞାନ । ୧୦ ।
ଉତ୍ତର ଦିଗରେ ଅତି ପ୍ରଶସ୍ତରେ ଯେବେ ଏ ମଧ୍ୟରୁ କେହି ।
ହୋଇବ ନିଶ୍ଚୟ ନକର ସଂଶୟ ନାସ୍ତି ଲଭିଟି ଅଟଇ । ୧୧ ।
ଐଶାନ୍ୟ କୋଣରୁ ଏ ଦେନ ମଧ୍ୟରୁ ଯେବେ ହୁଏ କେହି ସ୍ଥିତ ।
ଦୈବ ବିପକ୍ଷରୁ ଅନ୍ୟ ଉଦୟରେ ମୃତ୍ୟୁ ଘଟଇ ନିଶ୍ଚିତ ।୧୨।
ଶୁଭାଶୁଭ ମାନ ବୁଝିଣ ଆଗରୁ ସାବଧାନ ହୋଇଥିବ ।
ଶ୍ୟାମ କହେ ଭାଳ ନୋହିଲେ ଅଧିକ କଷଣକୁ ଲଭୁଥିବ ।୧୩।

# ମନୁଷ୍ୟମାନଙ୍କ ଦେହରେ ଥିବା ତିଳଚିହ୍ନରେ ଶୁଭାଶୁଭ ଫଳ

ତିଳ ଚିହ୍ନ ଥିବା ଶୁଭାଶୁଭ ଫଳ ଶୁଣ ଜନେ ଦେଇ ଚିତ୍ତ ।
ଯେଉଁ ପାର୍ଶ୍ୱେ ଯେଉଁ ସ୍ଥାନରେ ରହଇ କହିବା ତାହାର ତତ୍ତ୍ୱ ।୧।

ଲଲାଟ ଦେଶର ଦକ୍ଷିଣ ପାର୍ଶ୍ୱର ନାସିକା ଉପରେ ଥିଲେ ।
ଦେବଧନ ବଳେ ପ୍ରାପତ ହୁଅଇ ଯଶମାନ ଆଦି ମିଳେ ।୨।

ନେତ୍ରତଳେ ଯେବେ ତିଳଚିହ୍ନ ଥାଏ ଅଧବୟସ୍କୀ ହୁଅଇ ।
ଥିଲେ ଗଣ୍ଡଦେଶେ ଦେଶେଦ୍ଧା ଭଦେଶେ କୀର୍ତ୍ତି ଧନ ନ ମିଳଇ ।୩।

ଓଷ୍ଠର ନିମ୍ନ କି ଅବା ଉପରରେ ତିଳ ଯେବେ ଦୃଷ୍ଟ ହୋଇ ।
ବିଳାସିତ ପୁଣି ପ୍ରେମିକ ଲକ୍ଷଣ ଜାଣିବ ତଣକ ଭାଇ ।୪।

କଣ୍ଠଦେଶେ ଥିଲେ ବିବାହ ଉତ୍ତାରୁ ତର୍ତ୍ତିରୁ ମିଳଇ ଧନ ।
ଥିଲେ ବକ୍ଷ ସ୍ଥଳେ ସୁସ୍ଥ ଶରୀରରେ ସେ ପ୍ରାଣ ବଗଇ ଜନ ।୫।

ସୁଖ ସଉଭାଗ୍ୟ ଘଟଇ ନିଶ୍ଚୟ ତାହାର ସର୍ବ ସମୟେ ।
ଦକ୍ଷିଣ ହାତ ପଞ୍ଜାରେ ରହିଥିଲେ ପ୍ରାଣୀ ବୁଦ୍ଧିମାନ ହୁଏ ।୬।

ଉଦରରେ ଥିଲେ ବହୁ ଭକ୍ଷଣରେ ସେ ପ୍ରାଣୀର ସଦା ମନ ।
ପରିଚ୍ଛଦ ପ୍ରିୟ ଅଟଇ ନରଟି ସ୍ଥୂଳ କାୟାକୃତି ପ୍ରମାଣ ।୭।

ପୃଷ୍ଠଦେଶେ ତିଳଥିଲେ ହେବୁଝର ନୃଶଂସ ହୁଅଇ ପ୍ରାଣୀ ।
ଦକ୍ଷିଣ ବାହୁରେ ମହାଧୈର୍ଯ୍ୟବନ୍ତ ଶାନ୍ତଶୀଳ ହେବ ପୁଣି ।୮।

କଣ୍ଠଦେଶେ ଥିଲେ ଧୈର୍ଯ୍ୟଶୀଳ ହୁଏ ଆବର ଭକ୍ତି ପ୍ରିୟ ।
ବକ୍ଷାସନ୍ନ ମସ୍ତକରେ ହୋଇ ସେହୁ ପ୍ରାଣ ନାଶଇ ସଂଶୟ ।୯।

ସ୍କନ୍ଧ ନିମ୍ନ ତିଳ ଚିହ୍ନ ଥିଲେ ଜାଣ ଦୁଃଖାବସ୍ଥା ଚିରଦିନ ।
ଲଲାଟରେ ବାମଭାଗ କେଶପାଖେ ଥିଲେ ଦୁରବସ୍ଥ ଜନ ।୧୦।

କେବଳ ବାମରେ ଥିଲେ ନିରନ୍ତର ଅପବ୍ୟୟ କରୁଥାଇ ।
ନନା ଅରଜଣ ଜଗତ ମଧ୍ୟରେ ଉଦାସୀ ପ୍ରାୟେ ଭ୍ରମଇ ।୧୧।

ନାସା ଦକ୍ଷିଣରେ ଥିଲେ ଦୀର୍ଘକାଳ ଜୀବନ କରେ ଧାରଣ ।

ଅଧିବଯାତ୍ରୀ ସେ ଅଟଇ ନଚେ ଭୋଗ କରେ ଧନ ଧାନ୍ୟ । ୧୨ ।
ନାସିକାର ବାମସ୍ଥଳେ ତିଳ ଥିଲେ ନର୍ଦ୍ଧନ ହୁଅଇ ପ୍ରାଣୀ ।
ଅତିବ୍ୟୟୀ କଷ୍ଟଭୋଗୀ ସେ ନରକେ ଜଳ କଷ୍ଟ ଆଦ ଜାଣି । ୧୩ ।
ବକ୍ଷସ୍ଥଳେ ତିଳ ଲୋମଯୁକ୍ତ ହେଲେ ଭଦ୍ୟାବନ୍ତ ହୁଏ ଅତି ।
କବିତା ଶକ୍ତିରେ ପ୍ରାଣୀମାନଙ୍କର ହରୁଥାଇ ସେହି ମତି । ୧୪ ।
ଦକ୍ଷିଣ ସ୍ତନରେ ତିଳ ଚିହ୍ନ ଥିଲେ ଜ୍ଞାନବନ୍ତ ଧର୍ମବନ୍ତ ।
ବାମଗଣ୍ଡେ ତିଳ ବନ୍ତ ଅପଙ୍ଗଳ ବାତ୍ସଲ୍ୟ ପ୍ରେମରେ ରତ । ୧୫ ।
ଜନ୍ମ ଅସୌଭାଗ୍ୟ ଦର୍ଶନ ତାର ଯାବଜୀବନ ଘଟଇ ।
କର୍ଣ୍ଣ ମଧ୍ୟେ ତିଳବିନ୍ଦୁ ଶୁଭ ଫଳ ଯଶ ଧନ ବି ମିଳଇ ।୧୬ ।
ତିଳ ଦେଖି ଏହିପରି ଶୁଭାଶୁଭ ଫଳ ବୁଝିବ ସୁଜନେ ।
ଶ୍ୟାମସୁନ୍ଦର କହଇ ଏହି ବାକ୍ୟ ହେତୁ ରଖ ନିଜ ମନେ । ୧୭ ।

## ମନୁଷ୍ୟମାନଙ୍କ ଦେହରେ ଥିବା କଳାଜାଇମନ୍ଦାର ଶୁଭାଶୁଭ ଫଳ

ଶୁଣ ସୁଜ୍ଞଜନ ହେଇ ଏକମନ କଳାଜାଇର ଲକ୍ଷଣ ।
ପ୍ରାଣୀମାନଙ୍କର ଅଙ୍ଗରେ ରହିଲେ ଯେଉଁ ଫଳ ହୁଏ ଜାଣ । ୧ ।
ସେହି ଫଳମାନ ମିଳିବ ଅଗ୍ରତେ କହି ଯାଇଛନ୍ତି ଖନା ।
ପ୍ରତ୍ୟେକେ ଜାଣିବ ସବୁ ଶୁଭାଶୁଭ ନକର ବହୁ ଗଣନା । ୨ ।
ବଦନର ବାମ ପାର୍ଶ୍ୱେ କଳାଜାଇ ମନ୍ଦା ଥିବଟି ଯାହାର ।
ସେ ପ୍ରାଣୀର ଚିରକାଳ ଯାଏ ସୁଖ ଭୋଗେ କାଟୁଥାଇ କାଳ । ୩ ।
ଅତି ଧୀରବନ୍ତ ସେ ପ୍ରାଣୀ ନିରତ କରେ ପର ଉପକାର ।
ଦକ୍ଷିଣ ସ୍ତନରେ କଳାଯାଇ ଥିଲେ ସମ୍ମାନ ମିଳେ ଅପାର । ୪ ।
ମନ୍ଦା ଆନନରେ ତାର ଧନ ଯାଏ ଭୋଗେ ଲକ୍ଷଣ କ୍ଳେଶ ॥
ବାମ ହସ୍ତର କହୁଣୀ ପରେ ଥିଲେ ସର୍ବଦା ମନ ହରଷ । ୫ ।
କହୁଣୀର ତଳେ କଳାଜାଇ ଥିଲେ ବହୁଭାଷୀ ହୁଏ ଜନ ।
ଚଞ୍ଚଳ କରଣ କଥା ମାନ ବହି ତୋଷେ ପ୍ରାଣୀ ମନ । ୬ ।

ଦକ୍ଷିଣ ହସ୍ତର କହୁଣୀ ଉପରେ କଳାଜାଇ ମହା ଥିଲେ ।
ଚିରକାଳ ନିନ୍ଦିତ ବ୍ୟାପାରରେ ମନ ରହୁଥାଇ ଅବହେଳେ । ୭ ।
ଦକ୍ଷିଣ ହସ୍ତର କହୁଣୀ ତଳେ ଯା କଳାଜାଇ ମହାଥାଇ ।
ଅତ୍ୟନ୍ତ କାମୁକ ଅଟେ ସେହୁଜନ ଅଳପେ ସୁଖ ଭୁଞ୍ଜଇ । ୮ ।
ଦକ୍ଷିଣ ବକ୍ଷରେ ମୂର୍ଖେ ତା ହୁଅଇ ଆଦର ଅଧର୍ମେ ମତି ।
ବାମ ବକ୍ଷେ ଥିଲେ ପରଧନ ଲଭେ ନରଚେ ଗର୍ବିଇ ଅତି । ୯ ।
ନୟନରେ ଯେବେ ଥାଏ ଦୃଷ୍ଟି ଶକ୍ତି ପ୍ରାଣୀର ହୁଏ ବିଶେଷ ।
ବ.ଚା ସୁଚକ୍ଷୁର ବୁଦ୍ଧିମାନ ସେହୁ ଅଧର୍ମେ ଗମେ ଲେଶ । ୧୦ ।
କରତଳେ ଥିଲେ ଅପ୍ରବାସୀ ହୁଏ ଅରୁଣୀ ଅଟେ ପ୍ରମାଣ ।
ସ୍ୱାଧୀନ ଭାବରେ ଜୀବନ ଯାପନ ଜୀବ ଥାଇ ଯେତେ ଦିନ । ୧୧ ।
ଅବତଳେ ଧନ ନାଶ କରେ ଜାଣ ଅଳପ ଶିକ୍ଷିତ ହୋଇ ।
ନ ଅବା ସମ୍ପୂର୍ଣ୍ଣ କଦା ଅର୍ଦ୍ଧସମ ମୂର୍ଖଙ୍କ ସଙ୍ଗରେ ଥାଇ । ୧୨ ।
ଉଦରେ ରହିଲେ କାମୁକ ଭାବରେ ନିନ୍ଦିତ ଚରିତେ ରତ ।
ଗୁହ୍ୟ ସ୍ଥାନେ ଥିଲେ ଆପଣା ଶରୀରେ ହୁଏ ବହୁକଷ୍ଟ ଜାତ । ୧୩ ।
ଚନ୍ଦନ ମନ ଦୁଃଖରେ ରହିଣ ତଳେ ସୁଖ ନ ଲଭଇ ।୧୪।
ବାମପାଦ ମୂଳରେ ସ୍ଥିତ ହୋଇଲେ ମୂର୍ଖ ଅଶିକ୍ଷିତ ଜାଣ ।
ଦକ୍ଷିଣ ପାଦ ମୂଳରେ ଥିଲେ ନିରନ୍ତର ଭ୍ରମିବାକୁ ମନ । ୧୫ ।
କଣ୍ଠରେ ଅତ୍ୟନ୍ତ ଶ୍ରଦ୍ଧର ପୁଅ ମିଷ୍ଟଭାଷୀ ନ୍ୟାୟବନ୍ତ ।
କଟିରେ ରହିଲେ ଦୈହିକ ପୀଡ଼ାରେ ନିରନ୍ତେ ଦୁଃଖେ ଚିନ୍ତିତ ।୧୬।
ନିତମ୍ବ ଦେଶରେ କଳାଜାଇଥିଲେ ଅତୃଷ୍ଣବକ ନିସ୍ପାରେ ।
ନିରନ୍ତରେ ଚିନ୍ତା ହୋଇଥାଇ ରତି ଇଚ୍ଛା ନ କରି ମନରେ । ୧୭ ।
ପୃଷ୍ଠେ ଥିଲେ ରହି ଧୀରବନ୍ତ ହୋଇ କରଇ ବହୁତ ଦାନ ।
ଶାନ୍ତ ଚିତ୍ତେ ମହାନ୍ତଜନେ ଚିରକାଳ ସୁଶୀଳ ବଢେ ପୁଣ । ୧୮ ।

ଜାନୁରେ ରହିଲେ ଘର ଉପରାରେ ସେ ପ୍ରାଣୀର ଥାଏ ମତ ।
ଅତ୍ୟନ୍ତ ବଳିଷ୍ଠ ହୃଷଇ ମାନବ ସୁଖ ଭୋଗ କରେ ଜାତ । ୧୯ ।
ଜନାଜାଇ ମନ୍ଦା ଥିଲେ ଏହିପରି ଫଳ ନିର୍ଣ୍ଣୟ କରିବ ।
ଖନାବଦେ ବେଳେବେଳେ ଜଗତରେ ଏହା ଅନ୍ୟଥା ନୋହିବ ।୨୦
ହେ ସୁଜନମାନେ ଏହି ପରକାରେ ବୁଝ ଶୁଭାଶୁଭମାନ ।
ଶ୍ୟାମସୁନ୍ଦର କହଇ ଜାଣି ଶୁଣି ଦୁଃଖ ନ କରିବ ମନ । ୨୧ ।

---:※:

## ଷଷ୍ଠ ଅଧ୍ୟାୟ

## କାକ ଶବ୍ଦଦ୍ୱାରା ଶୁଭାଶୁଭ ନିର୍ଣ୍ଣୟ

ସୂର୍ଯ୍ୟ ଉଦୟ ବେଳେ କାକ, ପୂର୍ବ ମୁଖେ ଦେଲେ ଡାକ ।
ଯେଉଁସ୍ଥାନରେ ବସି ରବୁଥାଇ, ସେ ସ୍ଥଳରେ ଶତ୍ରୁ ନାଶଯାଇ ।୧।
ଶୁଣି ସାଧୁଜନ ହୋଇ ଏକ ମନ ଖନାର ବଚନ ଯାହା ।
ମିହିର ଆଗରେ ଯାହାଙ୍କ କହିଲେ ବୁଝିଲ କହିବା ତାହା ।୨।
କାକ ଶବଦରେ ପ୍ରହର ଭେଦରେ ବଗମାନଙ୍କର ଜାଣ ।
ଶୁଭାଶୁଭ ଫଳ ବୁଝିବ ଚଞ୍ଚଳ ଶ୍ୟାମ କହେ ନୁହେଁ ଆନ । ୩ ।
ସୂର୍ଯ୍ୟ ଉଦୟ କାଳରେ ଯେବେ କାକ ପୂର୍ବ ବଗେ ରବେ ବସି ।
ପୂର୍ବ ମୁଖ ହୋଇ ଯେବେ ରବ ଦେଇ ଅଇଶ୍ୟ ଶୁଭ ପ୍ରକାଶି ।୪।
ଶତ୍ରୁ ନାଶ ହୁଏ ଯଶମାନ ପାଏ ସେ ସ୍ଥାନର ଅଧିକାରୀ
ଏମନ୍ତେ ବୁଝିବ ଶୁଭ ଅଶୁଭକୁ କାକ ରବକୁ ବିଚାରି ।୫।
ପ୍ରଭାତକାଳରେ ଅଗ୍ନି କୋଣେ, କାକ ରବିଲେ ମିଷ୍ଟସ୍ୱନେ ।
ପ୍ରଳୟ—ସମରେ ମିଳେ ଯଶ, ଅବଶ୍ୟ ହୁଏ ଶତ୍ରୁ ନାଶ । ୬ ।
ପ୍ରଭାତ କାଳରେ ଅତି ମିଷ୍ଟସ୍ୱରେ ଅଗ୍ନି କୋଣେ କଲେ ରବ ।
ମଧ୍ୟା ସମୟରେ ଧ୍ୱନି ହୋଇଲେ ହେବ ଯଶମାନ ଲଭ ।

ଶତ୍ରୁ ନାଶଯାଏ ବ୍ୟାଧି ଘୁଞ୍ଚିଯାଏ ଭାଗ୍ୟରେ ଶୁଭ ଫଳଇ ।
ଖନା ବାକ୍ୟ ଆନ ନୁହଇ ଜାଣିବ ଚିତ୍ତବୃତ୍ତି ଆଉ ଦେଇ ।୨।
ପ୍ରଭାତେ ଦକ୍ଷିଣ ଦିଗେ ବସି, କାକଯେବେ କର୍କଶେ ରଷି ।
ରୋଗ ଶୋକ ଦୁଃଖଇ ଜାତ, ଖନା କହେ ବୃଦ୍ଧ ତଥ୍ୟ ।
ମିଷ୍ଟରବେ ମିଳେ ଧନ, ଦ୍ରବ୍ୟଲାଭ ଯଶମାନ ।
ବଂଶ ଧ୍ୱଂସ ସୁନିଶ୍ଚିତ, ମାନ୍ଦ ମିଳନ ନାମ ଖ୍ୟାତ ।
ଦେଖି ବୁଝିଲେ ଫଳାଫଳ, ଜାଣି ପାରିବ ତିନକାଳ ।୩।
ଦକ୍ଷିଣ ଦିଗରେ ପ୍ରଭାତ କାଳରେ କାକ ଯେବେ କର୍କଶରେ ।
ରବ କରୁଥିଲେ ଜାଣିବ ତତ୍କାଳେ ରୋଗ ଶୋକ ଆଦି ମିଳେ ॥
ଯେବେ ମିଷ୍ଟରବ କରୁଥିବ ତର୍ହିଁ ମିଳଇ ବହୁତ ଧନ ।
ନାନା ଦ୍ରବ୍ୟ ଲାଭ ନକର ଜାଣିବ ଆଦର ଯଶ ସମ୍ମାନ ॥
ଶତ୍ରୁନାଶ ଆଦି ହୋଇବ ପ୍ରସିଦ୍ଧ ମିତ୍ରସଙ୍ଗ ସମ୍ପଦ ।
ଖନା ବୋଲେ ଏହାପରି ବୁଝିନେଲେ ଜାଣିବ ତ୍ରିକାଳ ତତ୍ତ୍ୱ ।୩।
ନୈଋତେ ବସି ରବେ କାକ, ପ୍ରଭାତ ବେଳେ ଯେବେ ଦେଖ ।
ଜନ୍ମତ କଥା ଯେବେ ଆସି, ଜଣାଏ ଦୂତ ପରଦେଶୀ ।
କାର୍ଯ୍ୟରେ ହୁଏ ସମଫଳ, ମନେ ରଖିବା ଚିରକାଳ ।୪।
ପ୍ରଭାତ କାଳରେ ନୈଋତ କୋଣରେ ରବିଲେ କାକ ଯତନେ ।
ଜନ୍ମତ ବ୍ୟାପାର ପ୍ରାଣୀଙ୍କି ମିଳଇ ଚେଷ୍ଟା ଦୁଃଖଯାତ ମନେ ॥
କାହାଣସି ଜନ କର ଆଗମନ କହେ କିଛି ସମାଚାର ।
ଖନା କହେ କାର୍ଯ୍ୟ ସମଫଳ ହୁଏ ଜାଣିଥାଅ ଚିରକାଳ ।
ପଶ୍ଚିମେ ପ୍ରଭାତେ କଲେ ରବ, ଜନକଟରେ ବୃଷ୍ଟି ହେବ ।
କ୍ଷେତ୍ର ବସ୍ତ୍ର ନାଶ ଲଭ, କର୍ମେ ଘଟଇ ନାନା ଶୁଭ ।
କୌଣସି ବ୍ୟକ୍ତି ଆସି ପାଶେ, ଶୁଭ ସମାଚାର ଘୋଷେ ।
କେବଳ ନାଶ ସଙ୍ଗେ ଜାଣ ମଙ୍ଗଳ ହେବ ଘନ ଘନ ।୫।

ପଶ୍ଚିମ ଦିଗରେ ପ୍ରଭାତ କାଳରେ ଯେବେ କାକ ରବୁଥାଇ
ଅତିଶୀଘ୍ର ବୃଷ୍ଟି ହୋଇବ ଜାଣିଥା ଚିତ୍ତେ ସଂଶୟ ନ କର ।
ଖେଡ଼ ବସ୍ତୁ ନାଶ ଲଭିଛି ନିଶ୍ଚୟ କାର୍ଯ୍ୟ ହୁଏ ବହୁ ଶୁଭ ।
କେବଳ ନାଶ ସଙ୍ଗରେ କଷ୍ଟହିଁ ଜାଣିବ ନ କର କ୍ଷୋଭ ।
ବିଦେଶରୁ ଯେଉଁ ବ୍ୟକ୍ତି ଆସି ପାଶେ କହଇ କୁଶଳ କଥା ।
ଖନା ବୋଲେ ଏହା ଜାଣିଣ ମନରେ ଭଜନକୁ ନ କର ମଥା । ୫ ।
ପ୍ରଭାତ କାଳେ ବାୟୁକୋଣରେ, କାକ ରବଲେ ମିଷ୍ଟସ୍ୱରେ ।
ଯାନବାହାନ ଲାଭ ହୁଏ, ଭୋଜନେ ସୁଖ ଜନମାଏ ।
ପଥିକ ବ୍ୟକ୍ତି ପଥେ ଆସେ, ବସନ ମିଳଇ ବିଶେଷେ ।
ସୁବର୍ଣ୍ଣ ବୃଦ୍ଧି କର ନାଶ, ଗମନ ହୁଏ ପରବାସ । ୬ ।
ପ୍ରଭାତ ବେଳରେ ବାୟବ୍ୟ କୋଣରେ କାକ ରବେ ଯଷ୍ଟ ବସି ।
ଯାନ ଲାଭ ହୋଇବଟି ଜାଣିଥାଅ ସଜ୍ଜନେ ଶରଣଂସି ।।
ଉତ୍ତମ ଭୋଜନ ମିଳଇ ସେବନ ଚିନ୍ତିରେ ଚିତ୍ତ ସନ୍ତୋଷ ।
କଲ୍ୟାଣସି ବ୍ୟକ୍ତି କର ଶୀଘ୍ର ଗଛ ପାଶେ ହୁଏ ପରବେଶ ।।
ବସନ ଭୂଷଣ ଲାଭ ହୁଏ ଜାଣ ସୁବର୍ଣ୍ଣ ବୃଦ୍ଧି ବିନାଶେ ।
ବିଦେଶକୁ ଯିବା ଯୋଗଟି ମିଳଇ ଖନା କହେ ଅବଶେଷେ ।୭।
ଉତ୍ତର ଦିଗରେ ପ୍ରଭାତରେ, କାକ ନିରେଖି ମାନବରେ ।
ରବ କରିଲେ ଧନ ଧନ, ଜାଣିବ ଘୋର ଅପମାନ ।
ମହାକଷ୍ଟ ସର୍ପଭୟ ଅବଶ୍ୟ ହେବ ଧନକ୍ଷୟ ।
ନଷ୍ଟ ପଦାର୍ଥ ମିଳେ ଶେଷେ, କାମଧା ପୁଚ୍ଛେ ଖନା ଭାଷେ । ୭ ।
ଉତ୍ତର ଦିଗରେ ପ୍ରଭାତ କାଳରେ ମାନବଙ୍କୁ ନିରେଖିଣ ।
କାକ ରବେ ଯେବେ ସେହି ମ ଜବଙ୍କୁ ଅପମାନ ମିଳେ ପୁଣି ।।
ଶରୀରରେ ମହାକଷ୍ଟ ହୁଏ ଜାତ ସର୍ପଭୟ ହୁଏ ପୁଣି ।
ଆଶାପୂର୍ଣ୍ଣ ନ ହୋଇଣ ଧନ ମାନ ଯଶ ହୁଏ ହାନି ।।

ପ୍ରଥମରେ ସବୁ କାର୍ଯ୍ୟରେ ନିଷ୍ଫଳ ଘଟଇ ଅଧିକେ ଜାଣ ।
ଶେଷ କାଳେ ଶୁଭଫଳ ପରକାଶେ ଜାଣିବ ଏହା ପ୍ରମାଣ ॥
ହଜିବା ପଦାର୍ଥ ହୁଅଇ ପ୍ରାପତ ନଷ୍ଟଧନ ପୁଣି ମିଳେ ।
କାମନ ପୂରଇ ବିଳମ୍ବରେ ଯାଇ ଖଣା ଏହା ଡାକବୋଲେ ।୮।
ଈଶାନ କୋଣେ ସୁଖେ ବସି, କାକ ରାବିଲେ ଚଞ୍ଚୁ ଘଷି ।
ରୋଗ ନାଶ କରିବା ପାଇଁ; ମ୍ଲେଚ୍ଛର ନାରୀ ଆସେ ଧାଇଁ ।
ପ୍ରିୟବସ୍ତୁ ମିଳଇ ପାଶେ, ବୃଦ୍ଧ ସତ୍ୟ ଖଣା ଭାଷେ । ୯ ।
ଈଶାନ କୋଣରେ ପ୍ରଭାତେ ରାବିଲେ ନିଜ ଅଙ୍ଗକୁ ଘଷିଣ ।
ନିଜ ଶରୀରରୁ ବ୍ୟାଧିନାଶ ହେବୁ ମ୍ଲେଚ୍ଛ ସ୍ତ୍ରୀ କରେ ଗମନ ।
ଅଭିଳାଷିତ ଦ୍ରବ୍ୟ ମିଳଇ ଜାଣ ଚିତ୍ତେ ମନେ ସୁଖ ଲାଭ ।
ଅପ୍ରତେ ନକର ଖଣା ବଚନକୁ ଅଟଇ ନିଘଟ ସତ୍ୟ । ୧୦ ।

## ପ୍ରଥମ ପ୍ରହର ଫଳ

ଦିବସରେ ପ୍ରଥମ ପ୍ରହରେ ଯଦି ପୂର୍ବଦଗେ,
କାକ ରବେ ଶୁଭଫଳ ମିଳେ ଅତି ବ୍ୟଗ୍ର,
ମନୋବାଞ୍ଛା ହୁଏ ପୂର୍ଣ୍ଣ ପ୍ରିୟବ୍ୟକ୍ତି ଆସେ,
ନଷ୍ଟଦ୍ରବ୍ୟ ବେଳେ ହେଳେ ମିଳୁଥାଇ ପାଶେ । ୧ ।
ପ୍ରଥମ ପ୍ରହର ଶୁଭାଶୁଭ ଫଳ ଶୁଣ ହେ ସୁବୁଦ୍ଧି ଜନ ।
ପୂର୍ବଦିଗେ କାକ ରାବିଲେ ଇଷ୍ଟପ୍ର ମିଳଇ ବହୁତ ଧନ ।
ଅଭିଳାଷ ପୂର୍ଣ୍ଣ ହୁଅଇ ଅକସ୍ମାତେ ବୃଦ୍ଧ ଏହା ଖଣା ଭାଷେ ।୧।
ଅଗ୍ନି କୋଣ ଆଦ୍ୟ ପ୍ରହରେ ହୁଏ ଶତ୍ରୁ ନାଶ,
ଦିବ୍ୟ ନାରୀ ବଳେ ଆସି ମିଳେ ନିଜ ପାଶ
ଦକ୍ଷିଣରେ ବହୁ ସୁଖ ଲାଭ ଧନଲାଭ
ପ୍ରିୟବ୍ୟକ୍ତି ସଙ୍ଗ ଯୋଗ ମନେ ଭାବ । ୨ ।

ପ୍ରଥମ ପ୍ରହରେ ଅଗ୍ନି କୋଣଠାରେ କାକ ଯେବେ ରାବକରେ ॥
ସେ ସ୍ଥଳର ଶତ୍ରୁ ନାଶ ହେବ ବୋଲି ମନେ ଭାବୁଥାଅ ଧୀରେ ॥
ଉତ୍ତମା ସୁନ୍ଦରୀ ଯୁବତୀ ଆସିଣ ପାଶେ ହୁଏ ପରବେଶ ।
ଦକ୍ଷିଣ ଦିଗରେ ବସି ରାବୁଥିଲେ ସୁଖ ଲଭ ଯେ ବିଶେଷ ॥
ଆଦର ବହୁତ ଲଭି ପ୍ରାପ୍ତ ହୁଏ ପ୍ରିୟ ବ୍ୟକ୍ତି ଆସି ମିଳେ ।
କର୍ମେ ଶୁଭଫଳ ହୁଅଇ ପ୍ରବଳ ଅଶୁଭ ନ ହୋଇ ଭଲେ ॥
ମରଣ କାଳରେ ସ୍ୱାମୀଙ୍କ ଆଗରେ ଖଣା ଏହା କହୁଛନ୍ତି ।
ସୁଜ୍ଞଜନମାନେ ଅନ୍ୟମାନେ ନୋହୁ ଚିନ୍ତେ ଥାଅ ଚିନ୍ତି । ୨ ।

ନୈଋତରେ ରାବଦେଲେ ପ୍ରଥମ ପ୍ରହରେ,
ମିଷ୍ଟଦ୍ରବ୍ୟ ଭୋଜନରେ ଲଭ ଶାନ୍ତିଭରେ ।
ପ୍ରିୟତମା ନାରୀ ଲଭ ପଶ୍ଚିମରେ ବୃଷ୍ଟି ।
ଖାଇବା ପଦାର୍ଥ ଲଭ ହୁଏ ସୁଖ ସୃଷ୍ଟି । ୩-୪ ।

ନୈଋତ କୋଣରେ ପ୍ରଥମ ପ୍ରହରେ କାକା ଯେବେ ରବେ ଜାଣ ।
ମିଷ୍ଟାନ୍ନ ଭୋଜନ ହୁଅଇ ସେବନ ଚିତ୍ତ ସନ୍ତୋଷ ପ୍ରମାଣ ॥
ପ୍ରୀୟତମ ନାରୀ ପାଶେ ଆସି ମିଳି ତୋଷଇ ଚିତ୍ତ ପ୍ରମାଣ ।
ପଶ୍ଚିମେ ରାବିଲେ ଖାଦ୍ୟ ପଦାର୍ଥ ପ୍ରାପତ ହୁଏ ତତକ୍ଷଣ ॥
ସୁଖର ସୀମା ବୃଦ୍ଧି ହୁଅଇ ଜାଣ ଦୁଃଖ ହଟଇ ନିକଟେ ।
ଖଣାର ବଚନ ସତ୍ୟ ତେଣୁ ଜାଣ ସଂସାରେ ପ୍ରକଟେ । ୫-୬ ।

ବାୟୁ କୋଣେ ରାବ କଲେ, ସୌଧ ଲଭ ଯତ୍ନାନେ ।
ପଥିକ ସଙ୍ଗେ ହୁଏ ମିଳନ ଖଣା କହେ ବୁଝଇ ଆନ ।
ବାୟୁ କୋଣେ ରାବ କଲେ ଭୂମି କ୍ଷେତ୍ର ପ୍ରସବ ଲଭ ହୁଅଇ ।
ପଥିକ ଜନ ସଙ୍ଗେ ଭେଟ ହୁଅଇ ସେହିକ୍ଷଣ ଜାଣ ଭାଇ ।
ସୁଖ ସନ୍ତୋଷରେ ରଜନୀ ବାସରେ ମଜ୍ଜିଥାଇ ସେହି ପ୍ରାଣୀ ।
କୌଣସି ବାଧାବିଘ୍ନ ଯେଉଁ କାର୍ଯ୍ୟରେ ନ ଘଟଇ ଥାଅ ଜାଣି ।

ଉତ୍ତର ସ୍ୱର ନନ୍ଦାଏ ଚୌର ଶୋକ ସନ୍ତାପ ନିରନ୍ତର ।
ଶେଷ ହୁଏ ଶୁଭଫଳ ମଙ୍ଗଳ ବାର୍ତ୍ତା କର୍ଣ୍ଣ ଗୋଚର ।୬।
ଉତ୍ତର ଦିଗରେ ପ୍ରଥମ ପ୍ରହରରେ କାକ ସ୍ୱରିଲେ ନିଶ୍ଚିତ ।
ମାନବ ଶରୀର ଶୋକରେ ବ୍ୟାକୁଳ ହୁଅଇ ଅନବରତ ।।
ଅବଶ୍ୟରେ ଅଶୁଭ ଶେଷେ ହୁଏ ଶୁଭ ବଂଶର ସ୍ୱରରେ ପୁଣ ।
ଶୀଘ୍ର ସମାଚାର ହୁଅଇ ଗୋଚର ବଢ଼େ ଯଶ ମାନ ଧନ ।୭।
ଈଶାନେ କାକ ସ୍ୱରିଲେ ଘନେ ମିଳନ କରିବ ପ୍ରିୟଜନେ
ଅଗ୍ନି ଭୟ ଉପୁଜଇ, ବହୁତ ଲୋକ ଆସନ୍ତି ଧାଇଁ ।
ଊର୍ଦ୍ଧ୍ୱ ସ୍ଥାନେ ସ୍ୱରିଲେ ବସି, ମହାସୁଖ ପାଇବ ଶ୍ରୀ ।
କାର୍ଯ୍ୟସିଦ୍ଧି ବାଞ୍ଛାପୂର୍ଣ୍ଣ, ଖନାକହେ ହୁଅଇ ଆନ । ୮ ।
ଈଶାନରେ ବସି ସ୍ୱରିଲେ ଅନେକ ପ୍ରିୟବ୍ୟକ୍ତି ସଙ୍ଗ ମିଳେ ।
ଅଗ୍ନି ଭୟ ଜାଣ ଉପୁଜଇ ପୁଣ ଅଶୁଭ ଫଳଟି ଫଳେ ।
ବହୁତ ଲୋକ ଏକତ୍ର ହୋଇ ସ୍ଥିର କୌଣସି କାର୍ଯ୍ୟ କରନ୍ତି ।
ଊର୍ଦ୍ଧ୍ୱ ସ୍ଥାନେ ବସି ଯେବେ ସ୍ୱରକରି ଶବ୍ଦ ନ କରିବ ଭ୍ରାନ୍ତି ।
କାର୍ଯ୍ୟସିଦ୍ଧି ହେବ ବଉ ସ୍ତ୍ରୀ ମିଳିବ ମନବାଞ୍ଛା ହେବ ପୂର୍ଣ୍ଣ ।
ପ୍ରାଣୀଙ୍କ ହିତକେ ସ୍ୱାମୀଙ୍କ ଆଗରେ ଖନା କହୁଛନ୍ତି ଜାଣ । ୯ ।

## ଦ୍ୱିତୀୟ ପ୍ରହର ଫଳ

ଦିବସ ଦ୍ୱିତୀୟ ପ୍ରହରରେ ଯେବେ, ସ୍ୱନେ କାକ ପୂର୍ବଦିଗେ ।
ମନ ଚଞ୍ଚଳ ହୋଇ ଜାଣ, ପଥିକ ସଙ୍ଗେ ସୁମିଳନ । ୧ ।
ଦିବସ ଦ୍ୱିତୀୟ ପ୍ରହର ସମୟେ ପୂର୍ବେ କାକ ଯେବେ ଭାଷି ।
ମନଚଞ୍ଚଳ ହୁଅଇ ନିଶ୍ଚେ ଜାଣ ପ୍ରିୟଜନ ମିଳେ ଆସି । ୨ ।
ଅଥବା କୌଣସି ପଥିକ ପ୍ରବେଶ ମନ ଆନନ୍ଦରେ ଜାଣ ।
ଶୁଭ ସମାଚାର ପ୍ରବେଶ କରଇ ହେଉ ହରଷିତ ମନ ।୩।

ଅଗ୍ନି କୋଣେ କାକ ରଡ଼ିଲେ, ପ୍ରିୟ ବ୍ୟକ୍ତି ଆସି ମିଳେ ।
ନାରୀ ଲଭେ ଶୁଭ ସମ୍ବାଦ, ସଙ୍ଗେ ମୁଖ ସବୁ ଅହ୍ଲାଦ ।୪।
ଅଗ୍ନି କୋଣଟାରେ ଦ୍ୱିତୀୟ ପ୍ରହରେ ରଡ଼ିଲେ ସୁ-ନାରୀ ମିଳେ ।
ବାଦ ବିବାଦ ବିନାଶ ହୁଅଇ କର୍ମେ ମହାସୁଖ ଫଳେ ।୫।
ସ୍ତ୍ରୀସ୍ୱଜନ ଆଗମନ କରେ ପୁଣ ଶୁଭ ସମ୍ବାଦ ମିଳଇ ।
ସକଳ କାର୍ଯ୍ୟ ସିଦ୍ଧି ହୁଅଇ ପ୍ରସିଦ୍ଧି ସ୍ୱାମୀଙ୍କୁ ଖନା କହଇ ।୬।
ଦକ୍ଷିଣ ଦିଗେ କାକ ବସି, ରଡ଼ିଲେ ଶୀଘ୍ର ଜଳବର୍ଷି ।
ମହାଭୟ ଚିତ୍ତେ ଜନ୍ମଇ; ଇଷ୍ଟଜନ ପାଶେ ଆସଇ ।୭।
ଦକ୍ଷିଣ ଦିଗରେ କାକ ଯେ ରଡ଼ିଲେ ଜଳ ବରଷା ହୁଅଇ ।
ଚିତ୍ତେ ନାନା ଭୟ ଜନ୍ମେ ନଷ୍ଟପ୍ରାୟ କେବେହେଁ ସ୍ଥିର ନୁହଇ ।୮।
ଇଷ୍ଟଜନ ସଙ୍ଗେ ପରସ୍ପର ଜାଣ ସେହି ଅବସରେ ପୁଣ ।
ଶୁଭାଶୁଭ ମିଶ୍ରଫଳ ହେବ ବୋଲି ଖନା ବଚନର ମତ ।୯।
ନୈଋତେ କାକନେ ଭୟ ହୁଅଇ; ଅଦ୍ୟାନାରୀ ପାଶେ ମିଳଇ ।
ସ୍ୱେଚ୍ଛାନାଶେ ଛଡ଼ାକାଳେ; ସୁଖାଦ୍ୟ ମିଳଇ ଅପାରେ ।୧୦।
ନୈଋତ ଦିଗରେ କାକ ବସି ଯେବେ ରଡ଼େ ଦ୍ୱିପ୍ରହରେ ବେଳେ ।
ଆପଣା ଇଚ୍ଛାରେ ନିଜ ନିକଟରେ ଅଦ୍ୟନାରୀ ଆସି ମିଳେ ।୧୧।
ଶତ୍ରୁରଙ୍କୁ ରୋଗ ଛୁଟିଯାଏ ବେଗେ କେବଳ ଜୀବନ ଭୟ ।
ଉତ୍ତମ ଖାଦ୍ୟ ପଦାର୍ଥ ପରସ୍ପର ହୁଏ ନକର ସଂଶୟ ।୧୨।
ପଶ୍ଚିମେ ମନ୍ଦ ବୃଷ୍ଟି; ସକଳ କାର୍ଯ୍ୟ ଶୁଭବୃଷ୍ଟି ।
ବନ୍ଧେ ନାରୀ ପାଶେ ଖଟି, ଯଶ ଗୁଣ ବେଶେ ରଟି ।୧୩।
ପଶ୍ଚିମ ଦିଗରେ ଦ୍ୱିତୀୟ ପ୍ରହରେ ରଡ଼ିଲେ କାକ ବସିଣ ।
ମନ୍ଦ ମନ୍ଦ ବୃଷ୍ଟି ହୋଇବ ନିଶ୍ଚୟ ଏକଥା ଅଟେ ପ୍ରମାଣ ।୧୪।
ବଳେ ବଳେ ଅଦ୍ୟନାରୀ ପ୍ରବେଶଇ ନିଜ ନିକଟରେ ଆସି ।
ସକଳ କାର୍ଯ୍ୟରେ ଯଶ ପରସ୍ପର ନାମ ଗୁଣ ବେଶେ ଘୋଷି ।୧୫।

ତୁଷ୍ଟି ସ୍ତ୍ରୀ ଲାଭ ଭକ୍ଷେ ମାଂସ, ମିଳେ ଧନ ମାନ ଯଶ । ୬ ।
ବାୟୁ କୋଣେ ଚୌର ଭୟ, ଦୂତ ଆନେ ନାହିଁ ଭୟ ।
ବାୟବ୍ୟ କୋଣରେ ଅନ୍ତ ଉତ୍କଟରେ ନାଦ ଯେବେ ସବୁଥାଇ ।
ଚୌରଭୟ ଏକା ତଉ଼ ସ୍ଥଙ୍କେ ବଡା ଆଉ କିଛୁ ଭୟ ନାହିଁ ।
ଉତ୍ତମ କାମିନୀ ନିଜ ଆଜ୍ଞା ମାନି ନିକଟକୁ ଆସେ ଜାଣ ।
ମଂାସ ଆହାର ମିଳଇ ସେହ୍ନ ଦିନ ଲଭ ଯଶ ମାନ ଧନ ।
ଉତ୍ତରେ ସବ ପ୍ରିୟ ଲଭ; ଶୂନ୍ୟେ ଜୟ ଚୌରଭୟ ।
ପ୍ରିୟବ୍ୟକ୍ତି କରେ ଗତ, ଦୁଃଖ ସୁଖ ଦିନ ସତ । ୭ ।
ଉତ୍ତର ଦିଗରେ ଦ୍ୱିପ୍ରହର ବେଳେ କାକ ସବ କଲେ ପୁଣ ।
ସର୍ବଜନ ପ୍ରିୟ କରଇ ନିଶ୍ଚୟ ବିବାଦେ ଜୟ ପ୍ରମାଣ ।
ଚୌର ଭୟ ଏକା ହୁଅଇ ଟଙ୍କା ପ୍ରିୟ ବ୍ୟକ୍ତି ଆସେ ପାଶ ।
ସୁଖ ଦୁଃଖ ବେଳ ଲ୍ଲବରେ ରଜନୀ ଦିବସ ହୁଅଇ ଶେଷ ।
ଐଶାନ୍ୟେ କଠୋର ସ୍ୱରକଲେ, ଅଗ୍ନି ଭୟ ବୁଝିବ ଧୀରେ ।
ମିଷ୍ଟରବେ ସୁଖ ସମ୍ପଦ; ମିଳଇ ସ୍ୱଜମାନ୍ୟ ପଦ । ୮ ।
ଐଶାନ୍ୟେ କଠୋର ରାବେ ଯଦି କାକ କରଇ ବେଳ ପ୍ରହରେ ।
ଅଗ୍ନି ଭୟ କଷ୍ଟେ ହୁଅଇ ଜାଣିବ ସାଧୁ ସୁବିବେକ ନରେ ।
ମିଷ୍ଟରବ କଲେ ସୁଖ ଅବ ମିଳେ ଆଦର ରାଜସମ୍ମାନ ।
ଦ୍ୱିତୀୟ ପ୍ରହର କାକ ଶବ୍ଦ ଫଳ ଖନା ବୋଲେ କହେ ଆନ ।୮ ।

## ତୃତୀୟ ପ୍ରହର ଫଳ

ତୃତୀୟ ଯାମେ ପୂର୍ବ ଦିଗେ, କଠୋର ରବ କରେ ଯେବେ ।
ଚୌର ଭୟ ହୁଏ ମିଷ୍ଟରବେ ସୁଖ ସମ୍ପତ୍ତି । ୧ ।
ତୃତୀୟ ପ୍ରହର ଫଳହିଁ କହିବା କାକସ୍ୱର ଶୁଦ୍ଧକଥା ।
ପୂର୍ବଦିଗେ ବସି କଠୋରରେ ରାବ କରେ ନ ଟେକିବ ମଥା ।

ଚୌରଭୟ ହୁଏ ଧନ ନାଶଯାଏ ଯଶ ନ ମିଳଇ ।
ମିଷ୍ଟରସରେ ସ୍ୱର କହିଲେ ମାନବ ଅଙ୍ଗ ବ୍ୟାଧି ନାଶ ଯାଇ ।
ସ୍ୱଜନବନ୍ଧୁ ଜନ କରେ ଆଗମନ ଆପଣା ନିକଟେ ଶୁଣି ।
ସବୁକାର୍ଯ୍ୟେ ଜୟ ହୋଇ ନିଶ୍ଚୟ ଆଗରୁ ଥାଅ ସ୍ୱା ଜାଣି । ୧ ।
ଅଗ୍ନିକୋଣେ ତିନ ପ୍ରହରେ, କାକ ବହିଲେ ମିଷ୍ଟସ୍ୱରେ ।
କାର୍ଯ୍ୟ ଯଶ ସମାପ୍ତର ପ୍ରବେଶ ହେବେ ତତକାଳ ॥
କର୍କଶ ସ୍ୱରେ ମହାଦୁଃଖ, ତନେ ମାତ୍ର ନାହିଁ ସୁଖ ।
ବିବାହ ସମ୍ବାଦ ମିଳେ ଅସି, କାର୍ଯ୍ୟ ନାଶ ଖନା ଭାଷି । ୨ ।
ଅଗ୍ନିକୋଣେ ବସି ଭୁଖସ୍ତ ପ୍ରହରେ ଯେବେ କାକ ମିଷ୍ଟେ ଭାଷେ ।
ସକଳ କାର୍ଯ୍ୟରେ ଯଶ ଅବଗତ ଜାଣିଥାଅ ଅବଶେଷେ ॥
ଶୁଭକାର୍ଯ୍ୟେ ସମାପ୍ତର ମିଳେ ବନେ ମିଷ୍ଟସ୍ୱର କଲେ ଜାଣ ।
କର୍କଶ ସ୍ୱରରେ ଦୁଃଖଫଳ ଫଳେ ତନେ ସୁଖ ନାହିଁ ପୁଣ ।
ବିବାଦ ଖବର ଶୁଣଇ ଗୋଚର କାର୍ଯ୍ୟ ନାଶ ଯଶହାନି ।
ଖନା କହେ ସତ୍ୟ ମିଥ୍ୟା ବୁଝ ଦେଖି ଆଲେ ସୁଜନ ସୁଜ୍ଞାନ ।୨।
ଦକ୍ଷିଣ ଦିଗେ କଲେ ସ୍ୱର, ପୀଡ଼ା ଶୀଘ୍ର ଜନ୍ମେ ଶରୀର ।
ମହତ ଜନର ଦରଶନ, ଅଳ୍ପ କାର୍ଯ୍ୟ ସିଦ୍ଧ ଜାଣ । ୩ ।
କାକ ବସି ଯେବେ ଦକ୍ଷିଣ ଦିଗରେ ତିନ ପ୍ରହର ସମୟେ ।
ସ୍ୱର କଲେ ଜ୍ୱର ହୁଅଇ ଶରୀର ବହୁତ ଦିବସ ଯାଏ ।
ମହତ ଜନର ହୁଏ ଦରଶନ କାର୍ଯ୍ୟସିଦ୍ଧି ସାମାନ୍ୟରେ ।
ମନବ୍ୟଥା ଘଟେ ନିନ୍ଦା ଭାଷା ରଟେ ସୁଖ ନ ମିଳେ ତନ୍ଦ୍ରରେ ।୩।
ନୈର୍ଋତ ମେଘ ବୃଷ୍ଟି କରଇ ଧେୟନ ମିଷ୍ଟାନ୍ନ ପ୍ରାପ୍ତ ହୋଇ ।୧।
ଶତ୍ରୁ ନାଶ ଶୁଭ୍ର ଆସଇ, ବିଦେଶ ସମ୍ବାଦ ପାଣେ ମିଳଇ ।
ଯାହା କଲେ ହେବ ନାଶ, ମନ ମଧ୍ୟେ ଏହା ଭୋଷ । ୪ ।

ନୈଋତ କୋଣରେ ସ୍ୱବଲେ ସେ ବେଳେ ବରଷା ହୁଅଇ ଜାଣ ।
ମିଷ୍ଟାନ୍ନ ଭୋଜନ ହୁଏ ସେନ୍ଧବନ ବଇସ୍ୟ ଧ୍ୱଂସ ପ୍ରମାଣ ।
କଉଣସି ଭଦ୍ର ବ୍ୟକ୍ତି ଘରେ ଗନ୍ତ ମତ ସମାଗ୍ୱର ମିଳେ ।
ଯାହା ନ କରିବ ସାବଧାନ ହେବ ସ୍ୱାମୀ କ ଖନା ସ୍ତ୍ରୀ ବୋଲେ ॥
ପଶ୍ଚିମେ ସ୍ୱର ମିଷ୍ଟ ସ୍ୱରେ, ନଷ୍ଟ ଧନ ଗୃହେ ଫେରେ ।
ବିଦେଶେ ଗମନ ନଷ୍ଟେ ହୋଇ, ବନ୍ଧୁ ଦରଶନ ପାଇଁ ।
ବଳ ନ ଆସେ ନିକଟରେ, ଧନଲାଭ ଯଶ ବିସ୍ତାରେ ।୫ ।
ପଶ୍ଚିମ ଦିଗରେ ତୃତୀୟ ପ୍ରହରେ କାକ କଲେ ଶିଷ୍ଟରବ ।
ନାନା ପଦାର୍ଥ ହେବ ପରାପତ ବନ୍ଧୁ ଦରଶନ ସବ ।
ବିଦେଶେ ଗମନ ଘଟିବ ପ୍ରମାଣ ନଷ୍ଟେ ହେବ ଧନ ଲାଭ ।
ବଳବାନ ବ୍ୟକ୍ତି ନିକଟକୁ ଆସି ଘଟିବ ଯଶ ପ୍ରସ୍ତାବ ॥
ଧନ ମାନ ଯଶ ଲାଭ ସୁହୃରସ ଚଉରେ ଲଭିବ ଶାନ୍ତ ।
କର୍କଶ ସ୍ୱରରେ ମନ୍ଦଫଳେ ମନେଖାପ ଏହାଚିନ୍ତ । ୬ ।
ବାୟୁକୋଣେ ରଡିଲେ କାକ, ରାତ୍ର ପ୍ରହରଠାରେ ଦେଖ ।
ଦୁଃଖ ଦୁର୍ଦ୍ଦିନ ହୁଏ ଉପସ୍ଥିତ, ଚୋର ଭୟ ସୁନିଶ୍ଚିତ ।
ଦ୍ରବ୍ୟ ନାଶ୍ର ମିଳନ, ବିଦେଶ ଯାହା ଶୁଭ ସମ୍ମାନ ।
ମିଷ୍ଟରବର ଫଳ ଏମନ୍ତ, ଖନା କହେ ବୁଝଇ ଆନ ।
ବାୟୁକୋଣେ ବସି ତୃତୀୟ ପ୍ରହରେ କାକ ଯେବେ ରଡେ ଘନେ ।
ଅତ୍ୟନ୍ତ ଦୁର୍ଦ୍ଦିନ ପ୍ରବେଶ ହୁଅଇ ଭୟ ଉପୁଜଇ ମନେ ॥
ଅଳ୍ପ ଚୋରଭୟ ହୁଅଇ ନଷ୍ଟ ମିଷ୍ଟରବ କରେ ଯେବେ ।
ଦ୍ରବ୍ୟ ନାଶ୍ର ସଙ୍ଗେ ମିଳନ ବିଦେଶେ ଗମନ ଲଭେ ॥
ଶୁଭଫଳ ଫଳେ ସକଳ କର୍ମରେ ବଢ଼େ ଧନ ମାନ ଯଶ ।
ପରୀକ୍ଷା କରିଣ ବୁଝ ନିଜ ମନେ ଆନ ବୁଝେଁ ଖନା ଭାଷ । ୭ ।

ଉତ୍ତର ଶନ ପ୍ରହର ବେଳେ, କାକ ରବଲେ ମିଷ୍ଟସ୍ୱରେ ।
ରାଜସେବା ମିଳଇ ଆଗ, କାର୍ଯ୍ୟ ହାସ ଧନ ଲାଭ ।
ସୁସମ୍ବାଦ ମିଳେ ଆସି, ବେଶ୍ୟା ସମ ଗମ ଯଶରାଶି ।
ଯାହାକଲେ ଶୁଭ ହୁଏ; ବୁଝି ଦେଖ ଖନା କହେ । ୭ ।
ଉତ୍ତର ଦିଗରେ ସେହିକ ବେଳରେ ମିଷ୍ଟସ୍ୱର ରବ କଲେ ।
ରାଜ ସେବା ଦାସ ଧନ ଲାଭ ହୁଏ ପୁଣି ଶୁଭ ବାର୍ତ୍ତା ମିଳେ ॥
ବେଶ୍ୟା ସଙ୍ଗେ ନାନା ହାସ୍ୟ ପରିହାସ ଘଟିବ ବୋଲି ଜାଣିବ ।
ଯାହାକଲେ ଯଶ ଶୁଭ ପରକାଶ ଖନା କହେ ନିଶ୍ଚେ ହେବ । ୮ ।
ଈଶାନ କୋଣେ ରବଇ ଯବ, ଦେହରୁ ଯାଏ ସର୍ବ ବ୍ୟାଧି ।
କାର୍ଯ୍ୟେ ଯଶ ଲାଭ ହୁଏ, ମିଷ୍ଟରବେ ଏହା ବୁଝାଏ ।
କର୍କଶ ସ୍ୱରେ ଅପଯଶ, ସକଳ କାର୍ଯ୍ୟ ହୁଏ ନାଶ ।
ଉର୍ଦ୍ଧ୍ୱେ ବସି ରବେ ଯେବେ, ତାମ୍ବୁଲ ଭୋଜନ ଲାଭ ତେବେ ।
ଈଶାନ କୋଣରେ ସୁମିଷ୍ଟ ସ୍ୱରରେ କାକ ଯେବେ ରବୁଥିବ ।
ଶରୀରରୁ ସବୁ ବ୍ୟାଧି ନାଶ ହେବା କଥାକୁ ଆଗେ ଜାଣିବ ।
ସକଳ କାର୍ଯ୍ୟରେ ଶୁଭ ଫଳ ଚିତ୍ତ ହୁଏ ହରଷିତ ।
କର୍କଶରେ ରବକଲେ ଅପଯଶ କାର୍ଯ୍ୟନାଶ ସୁନିଶ୍ଚିତ ।
ଉର୍ଦ୍ଧ୍ୱସ୍ଥାନେ ବସି ଯେବେ ମିଷ୍ଟରାବି ତାମ୍ବୁଲ ଲାଭ ହୁଅଇ ।
ତୃତୀୟ ପ୍ରହର କାକ ଶବ୍ଦ ଫଳ ଏମନ୍ତେ ବୁଝିବ ସାଇ । ୮ ।

## ଚତୁର୍ଥ ପ୍ରହର ଫଳ

ଚୁର ପ୍ରହରଠାରେ କାକ, ପୂର୍ବ ଦିଗରେ ମକ ମକ ।
ଦେହପୀଡ଼ା ମହା ଭୟ, ରାଜପୂଜା ଧନ କ୍ଷୟ ॥
ଅଗ୍ନିକୋଣେ ଭୟ ବୃଦ୍ଧି, ଦେହ ହୁଏ ନାନା ବ୍ୟାଧି ।
ଶିଷ୍ଟଜନ ଅସେ ପାଶେ, ମରଣ ଘଟେ ଖନା ଭାଷେ । ୧ ।

ଚତୁର୍ଥ ପ୍ରହର ବେଳରେ ନଉର ଡାକ ଶୁଭଲେ ପୂର୍ବରେ ।
ଶଷ୍ଟରେ ହେଉଣ ଜାଣିବ ଅବଶ୍ୟ ଭୟ ଉପୁଜେ ଚିତ୍ତରେ ॥
ଆବର ଧନକ୍ଷୟ ହୁଅଇ ଜାଣ ଅଲ୍ପେ ସୁଖ ପ୍ରକାଶେ ।
ରାଜ ସମ୍ମାନ ମିଳଇଟି କେବଳ ମନ୍ଦଫଳ ଅବଶେଷେ ।
ଅଗ୍ନି କୋଣେ ରବକଲେ ମହାଭୟ ପୁଣି ଦେହପୀଡ଼ା ହୁଏ ।
ସଜ୍ଜନ ବ୍ୟକ୍ତି କରଣ ଆଗମନ ଧର୍ମ ଉପଦେଶ ଦିଏ । ୧ । ୨ ।
ଦକ୍ଷିଣେ କଲ ଅବସ୍ଥିତି, କାକରବେ କର୍କଶ ଅତି ।
ଶତ୍ରୁ ଭୟ ଚୌର ଭୟ, ମହତ ଜନ ଆସେ ନିଶ୍ଚୟ ।
ନୈଋତ ଧନ ଯଶ୍ୟମାନ, ବାଞ୍ଛିତ ବସ୍ତୁଲାଭ ପୁଣ ।
ପ୍ରଥମରେ ଚୌର ସଙ୍ଗେ, ଯୁଦ୍ଧ ହୁଏ ନାନା ରଙ୍ଗେ । ୩ । ୪ ।
ଦକ୍ଷିଣ ଚତୁର୍ଥ ପ୍ରହରରେ ଯେବେ କର୍କଶେ ରବଇ ।
ଜାଣିବ ନିଶ୍ଚୟ ଶତ୍ରୁ ଭୟ ହେବ ଧନ ଚୌର ବହ୍ନେବ ।
ମହତଜନ ଏକା କେବଳ ନିଜ ନିକଟରେ ପରବେଶ ।
ନୈଋତେ ରବଲେ ଧନ ଯଶ ମାନ ଆସି ମିଳଇ ବିଶେଷ ।
ବାଞ୍ଛିତ ପଦାର୍ଥ ହୁଅଇ ପ୍ରାପତ ପୁଣି ଏକ କଥାଶୁଣ ।
ପଥ ମଧ୍ୟେ ଚୋର ସଙ୍ଗେ ଧସ୍ତାଧସ୍ତି ହୋଇବ ସେଦିନ ଜାଣ । ୫।୬।
ଚତୁର୍ଥେ ବାୟବ୍ୟ ପଶ୍ଚିମଦଗେ, ରବକଲେ ମିଷ୍ଟ ସ୍ୱରରେ ଯେବେ ।
ବ୍ରାହ୍ମଣ ନାସ୍ତି ମିଳଇ ପାଶେ ଅର୍ଥ ଲାଭ ଅବଶେଷେ ।
ରାଜ ସନ୍ଧ୍ୟ ଲାଭ ଯୋଗ, ପୁତ୍ର ଯଶଫଳ ଭୋଗ ।
ବୃଷ୍ଟି ହୁଏ ସେହି ଦିବସ, ଖନା ବୋଲେ ଦେଖ ଅବଶ୍ୟ ।୭।୮।
କୌଣସି ବ୍ରାହ୍ମଣ ପାଶେ ଆସେ ଜାଣ ଧନ ମିଳଇ ବ୍ୟଗ୍ରରେ ।
ଯେତେକ ଭୂମି ରାଜପ୍ରସାଦ ପ୍ରାପତ ହୁଅଇ ଶୁଭ ଯୋଗରେ ।
ଯୁଦ୍ଧେ ଯଶଲାଭ ବୋଲିଣ ଜାଣିବ ସ୍ନେହେ ବନ୍ଧନ ସକଳେ ।

ସୂର୍ଯ୍ୟ ନାସିମା ରହେ ଆଜ୍ଞା ମାନ ବୃଷ୍ଟି ହୁଏ ସେହିଦିନ ।
ଖନା କହେ ଯେବେ ହେବୁ ରଖିଥିବ ବୁଝିବ ଏ ଫଳମାନ ।
ଦ୍ୱିତୀ ପ୍ରହରରେ ବାୟୁବ୍ୟରେ, କାକ ରାବିଲେ ସମସ୍ତରେ ।
ସାତ ଦିବସ ମଧ୍ୟେ ଜାଣ, ହୋଇ ବିଦେଶ ଗମନ ।
ପୁଣି ପ୍ରତ୍ୟାଗମନ କରେ, ପ୍ରବେଶେ ଆପଣା ଗୃହରେ ।
ପ୍ରିୟତମା ସ୍ତ୍ରୀ ପାଶେ ଆସି, ସୁମଧୁରରେ ବାକ୍ୟ ଭାଷି । ୬ ।
ବାୟୁବ୍ୟରେ କାକ ରବ କରେ ଯେବେ ଚତୁର୍ଥ ପ୍ରହରେ ବସି ।
ସାତଦିନ ମଧ୍ୟେ ବିଦେଶ ଗମିଣ ଅତିଶୀଘ୍ର ଫେରି ଆସି ॥
କାର୍ଯ୍ୟ ଧନହାନି ବିଦେଶେ ହେବାରୁ ଗୃହେ କରନ୍ତେ ଗମନ ।
ଦ୍ରବ୍ୟନାଶ ଅଙ୍ଗେ ମିଳନ ହୁଅଇ ଏହା ନ ବୁଝିବ ଆନ ॥
ଉତ୍ତରେ କାକ ରାବଇ ଯେବେ, ପଥିକ ବ୍ୟକ୍ତି ଆସଇ ତେବେ ।
ତାମ୍ବୁଳ ମିଳେ ବିଶେଷ ହୋଇ, ବୈଶ୍ୟ ଠାରୁ ଧନ ପାଇ ।
ଯାହା କଲେ ହୁଏ କ୍ଲେଶ, ପ୍ରାଣପୀଡ଼ା ଧନ ନାଶ ।
ଖନା କହେ ବୁଝ ଧୀରେ, ମିଥ୍ୟାନୁହେଁ କେଉଁ କାଳେ । ୭ ।
ଉତ୍ତରରେ କାକ ସେବେ ରାବିଲେ ପଥିକ ଜନ ଆସଇ ॥
ବୈଶ୍ୟଠାରୁ ବିତ୍ତ ହୁଏ ପତ୍ରପତ ତାମ୍ବୁଳ ବିଶେଷ ପାଇ ।
ଯାହା କଲେ କ୍ଲେଶ ଲଭିବଶ୍ୟ ଶରୀରରେ ପୀଡ଼ାହୁଏ ।
ନଷ୍ଟେ ଧନବ୍ୟୟ ନ କର ସଂଶୟ ଖନା ଏହାଡ଼ାକ କହେ । ୭ ।
ଈଶାନ କୋଣେ ଶୁଭଯୋଗ, ଦେହରୁ ହଟେ ନାନା ରୋଗ ।
ହେଲେ ସୁଖ ଭକ୍ଷ ଭୋଗ, କର୍ମେ ନ ଥିଲେ ଅନ୍ୟାଳୁ ମାଗ ।

ଯାଚିଲେ ନାହିଁ ମାଗିଲେ ଦେଇ

ଖନା ବୋଲେ ଫଳ ବୁଝିହେ ଭାଇ । ୮ ।

ଚତୁର୍ଥ ପ୍ରହରେ ଈଶାନ କୋଣରେ କାକ ରାବିଲେ ଯତନେ ।
ଶରୀରରୁ ସବୁ ବ୍ୟାଧିନାଶ ହେବ ରଖ ନିଜ ମନେ ॥

ଶୁକ୍ରଫଳ ଭୋଗ ଅଛୁ ନଷ୍ଟ ଯୋଗ ନେହେ ଦୃଶ୍ୟ ନ ହୋଇଲେ ।
ଅନ୍ୟ ଲୋକଠାରୁ ଉପଦେଶ ପାଇ ସୁଖ ଭୁଞ୍ଜି ଅବହେଳେ ॥
କୌଣସି ଲୋକଙ୍କୁ ଧନ ଯ ଚିନ୍ତିଲେ ନ ମିଳଇ କଦାଚିତେ ।
ନିଜ ଯାହାକୁ ଯେଉଁ ଦ୍ରବ୍ୟ ମାଗିବ ସେ ମିଳିବ ଅନାୟାସେ ।
ଏସନ ଲକ୍ଷଣ ବୁଝିବ ପ୍ରମାଣ କାକ ଶବ୍ଦରୁ ବିସ୍ତର ।
ଖନାବାକ୍ୟ ଆନ ନୁହେଁ କେତେବେଳେ ବୁଝି ଥିବ ହେତୁ କରି ।
କାକସ୍ୱର ଫଳ ସ୍ୱର ବିସ୍ତର ଷଷ୍ଠ ଅଧ୍ୟାୟରେ ଶେଷ
ଏ ଖନା ବଚନ ନୁହେଁ କେବେ ଆନ ମନରେ ହୃଦୟେ ଘୋଷ ।
ସକଳ ଜନଙ୍କ ଉପକାର ହେବ ସ୍ୱସ୍ଥିର ହୋଇଲେ ବେଳେ ।
ଖନା ମନୋହର ସ୍ୱାମୀ ଶ୍ରୀ ମଧୁସୂଦନ ରଚିଲେ ରସେ । ୮ ।

— ଇତି ଷଷ୍ଠୋଽଧ୍ୟାୟ ଖନାବଚନ ସମାପ୍ତ —

## ପରିଶିଷ୍ଟ

### ଡାକ ବଚନ

ରବି ଦଶଘଡ଼ି ସୋମ ଚଉଠା, ବାର ମଙ୍ଗଳ ପଣ୍ଡିତ ଷଷ୍ଠା ।
ଗୁରୁ ଚଉଦ ମନ୍ତ୍ରୀ ଆଠ, ଆଦ୍ୟ ପ୍ରାନ୍ତେ ଶନିର ପାଠ । ୧ ।

ଧୂଳିଆ ଗୃଣ୍ଡିବ କାଦୁଅ ଗନ୍ଧା
ଡାକ ବୋଲି ଧାନ ହାଟକୁ ନେବା । ୨ ।
ହସି ପଶେ, ଉଭିଁ ନ ଦିଶେ,
ସଜ ଗୋବରରେ ଅଂଶେଇ ବସେ,
ଡାକ ବୋଲେ ଧୂଆ ନଷ୍ଟ କରଷେ । ୩ ।

କାଣ ସ୍ତ୍ରୀଭର ପୁଅ ମୂରୁଖ, ଡାକ କହଇ ଏ ବଡ଼ ଦୁଃଖ । ୪ ।

ଷାଣ୍ଢି ହାଳ ଦେଇ ପାଣିକ ଯାଏ,
ଘର ପୁରୁଷକୁ ଆଡ଼େଇ ଖାଏ ।
ସାନ୍ଧ ସାନ୍ଧ ବୁଲେ ଗୀତ ଗାଇ
ଡ଼ାକ ବୋଲେ ଜଏ ତାକୁ ରଖଇ । ୫ ।
ଚୈତ୍ରରେ ଘୋଟେ ବୈଶାଖରେ ମୁଠେ,
ଜ୍ୟେଷ୍ଠରେ ହାରେ, ଆଷାଢ଼ରେ ଘଟେ,
ଚଷାଙ୍କଇରେ ଚଷ ଖାଇ, ମଲ୍ଲୀ ଗଛ ଲଗା ଭୁଞ୍ଜ । ୬ ।
ଶ୍ରାବଣ ମାସରେ କୃଷ୍ଣ ଚଉଠି, ଖୁରବଗ୍ର ଯେବେ ମେଘ ନ ଉଠି
ପୂବେ ପଶ୍ଚିମେ ନ ବହ୍ନ ବାଆ
ଡ଼ାକ ବୋଲେ ପୁତା କେଶାନ୍ତର ଯାଆ । ୭ ।
ଧର୍ମକୁ ଡର ଅଧର୍ମ କରେ, ପରଧନ ପରନାସ୍ତିକ ହରେ ।
ଚଉ ଅ'ଇ ପଣା ସୁଆ ଖେଳେ
ଡାକ କହେ ସ୍ୱାଙ୍କୁ ଛେଳ ଚଟକାଲେ । ୮ ।
ସ୍ୱର୍ଣ୍ଣ ଭୂମି କନ୍ୟାଦାନ, ଡ଼ାକବୋଲେ ସ୍ୱର୍ଗେସ୍ଥାନ । ୯ ।
ଉଖ ମୁଠି ଆଡ଼ ହିମୁଠି, କଆସ୍ତ ମଣ୍ଡିରେ ପୋତିବୁ କାଠି ।
ଖଲରେ ରଖିବୁ ପାଣି ସମାନ, ପର୍ବତ ଶିଖରେ ବୁଣିବୁ ଧାନ ।
ଚର୍ଣ୍ଣରେ ଯେବେକ ନୋହିବ ଧାନ,
ତେବେ କାଟିବୁଟି ଡ଼ାକର କାନ । ୧୦ ।
ଖଳଆ ବୋଲି ପା'ଚଳରେ ଦେଖ ମୋର ଖ୍ୱଲ ।
ଭୂଇ ମୁଣ୍ଡି ଦୁହେଁ ଏକାଠି ହେଲେ ଗୋସାଇଁ ଖାଇବା କାଳ ।୧୧।
ନ' ବାନ୍ଧୁଆ ନ' ବାନ୍ଧୁଆ ଭାଗ୍ୟେ ଥିଲେ ପାଇ
ସାତ ବାନ୍ଧୁଆ ଆଠ ଦାନ୍ଧୁଆ ଗୋସେଇଁ ଥିଲେଖାଇ । ୧୨ ।
ଜାଣ ନ ଜାଣ ଝୁମ୍ପ ଝୁଡ଼ ଆଣ, ଖାଡ଼ଆ ଶିଙ୍ଘା ସବୁଠୁ ଟାଣ ।
କୁଣ୍ଡଳୀ ଶିଙ୍ଘା ଦେଖିବୁ ଯେବେ, ଅଣ୍ଟାରୁ ପଇସା କାଢ଼ିବୁ ତେବେ

ଆଣିଥିବୁ ମୂଳା ଶିଙ୍ଘାକୁ ଉପି, କାନ୍ଦୁଥିବୁ ବୃଦ୍ଧ ମୁଣ୍ଡରେ ବସି ।
ଯେବେ ଦେଖିବୁ ଟାକୁ ଲଞ୍ଜୁଆ, କାଢ଼ିବୁ ଯେତେ ଟଙ୍କା ଗାଞ୍ଜିଆ
ଶିଙ୍ଗ ସରୁଆ ଲଙ୍ଗୁଡ଼ି ମୋଟା, ମାଗଣା ଦେଲେ, ନ ଆଣିବୁ ବେଟା

ଅନାବନା କର ଚଷ ମଇ ନକ କର ଘଷ । ୧୪ ।

ଦୁଧଁର ବାହୁସ୍ତ ପାଣିର ଧାନ, ନୋହିଲେ କାଟିବୁ ଡ଼ାକର କାନ ।
ପୂର୍ବେ ରୌଦ୍ରାବଳୀ ପଶ୍ଚିମେ ମେଘ,

କାକ ବୋଲେ ପୃଚ ନଷ୍ଟେ ଖୋଇ । ୧୬ ।

ଅଲ୍ପ ବୃଷ ବୁଟମ୍ଭ ପୋଷ, ବହୁ ବୃଷ ସର୍ବନାଶ । ୧୭ ।

ଚନ୍ଦ୍ରମଣ୍ଡଳ ମଧ୍ୟେ ତାରା, ମେଘ ବରଷଇ ମୁଷଳ ଧାରା । ୧୮ ।
ଆଷାଢ଼ ମାସରେ ବଳୁଣ ବୃଷ ଅତିଶ୍ରେଗ୍ୟ ଥିଲେ ପାଇ
ଠିଆ ହୋଇ କର ଧାନ ବୁଣିଲେ ବସି ଖାଉଥିବୁ ଭାଇ । ୧୯ ।
ଆଠଦୁମୁକାଣି ଷୋଳ ଅସରା, ବଭଣ ଝିପିଝିପି ଚୌଷଠି କୁଣ୍ଡାଙ୍କ
ତେବେ ଧାନ ହୁଏ ଭରା, ତଥା ପେଟ ହୁଏ ପୂରା । ୨୦ ।
ଯାହାଘରେ ନାହିଁ ଢ଼ିଙ୍କି ମୁଷଳ, ତାର ଘରେ ଦୁଃଖ ଚିରକାଳ ।
ସ୍ୱୈର ସେବକ ସ୍ୱୈରଣୀ ଥାଇ, ପଢ଼ୋଶୀ ଖଳ ଦୁଷ୍ଟ ଭାଇ ।
ଦୁଷ୍ଟା ନାରୀ ପୁଷ୍ଚ ଜୁଆର, ଡ଼ାକ ବୋଲେ ଦୂରେ ପରିହର
ନଷ୍ଟ ବୁଆ ଦକ୍ଷିଣ ବାପ୍ୟେ, ନଷ୍ଟ ଝିଅ ବୋଲୁଛୁଣି ମାଏ ।
ନଷ୍ଟ ବଧୂ ଯେ ପର ଘରେ; ପୁଷ୍ଚ ନଷ୍ଟ ପରଦାର କରେ । ୨୩ ।
ବୁଦ୍ଧି ନାଶେ ଘନ ବୃଷେ, କୁଳବଧୂ ନାଶେ ପ୍ରବାସେ ।
ଆବର ନାଶେ ନଭ୍ୟ ଗମନେ, ସର୍ବନାଶ ଘନ ପବନେ । ୨୪ ।
ଚଷା ଦୁଢ଼ଲେ ବରଷେ ଗଞ୍ଜଢ଼ ଦୁଢ଼ଲେ ବନେ ।
ବଟୁଅ ଦୁଢ଼ଲେ ହାଟ ପାଳଏ, ଏହା ଭଣିଥା ମନେ । ୨୫ ।
ଅନ୍ନେ ତିକ୍ତ ଦାନ୍ତେ ଲୁଣ, ପେଟ ପୂରିବ ତିନକୋଣ ।
ମଥାରେ ପଗଡ଼ି ପାଦରେ ତେଲ, ବଇଦ ସାଙ୍ଗରେ କରିବ ଗେଲ ।

ସଞ୍ଜ ସକାଳେ ଯେ ଶୋଷଖସ୍ତ ଯା, ତା ପଇସା କି ବଇଦ ଖାଏ ।
ଶୋଭ ଶାଳ ଜଙ୍ଘ ଚାନ, ଲୁଅ ହୋନ, ବତା ବାଂଶାଳ ।
ଗଣ୍ଡି ବେତାଳ, ଘରଣୀ ଚେତାଳ, ତେବେ ସେଘର ଯାଏ ଅପାରକାଳ
ଏକବୁଢା ପାଳେ, ଏକ ବୁଢା ବୁଢାବୁମାରେ ।
ଏକ ବୁଢା ଶ୍ୱଶୁର ଘରେ ଜ୍ୱାଇଁ ଏକ ବୁଢା ଭଉଣୀ ଘରେ ଭାଇ ॥
ଡିଂଗୁ ଡଙ୍ଗୁଆ ମାଗୁର ଜଣା ହ୍ରଦ ରେ ନଥାଏ ବାଳ ।
ଏକମନ ଘରକେ ନପିବ ଖାଇଥିବ ସେତେ କାଳ । ୩୦ ।
କାକୁଡ଼ିଆ ନଡ଼ିଆ ମକ୍କା, ଦାନ୍ତ ପଡ଼ିଲେ ଚଳକୁ ପକା । ୩୧ ।
ଶୀତ ନାଶଯାଏ କାଠରେ, ପାଣି ନାଶଯାଏ ଘାଟରେ ।
ତୃଷା ନାଶଯାଏ ହାଟରେ, ବୁଦ୍ଧି ନାଶଯାଏ କୁଣ୍ଠରେ । ୩୨ ।
ଗରଜନ୍ତି ମେଘ ବରଷନ୍ତେ ନାହିଁ, ଭୁକନ୍ତି କୁକୁର କାମୁଡ଼ନ୍ତେ ନାହିଁ ।
ସୁସଙ୍ଗେ ବସିଲେ ଖାଆ ଗୁଆପାନ, କୁସଙ୍ଗେ ବସିଲେ କଟା ଦୁଇକାନ
ପଥର ଗୁଣ୍ଡିଆ ଘର କରନ୍ତି, ପଥର ଗୁଣ୍ଡିଆ ଉଡ଼ ଜାଣନ୍ତି । ୩୫ ।

ଖାଇ ଶୋଇଲେ ବଢ଼ଇ ଆୟୁ ।
ଖାଇ ବୁଲିଲେ ବଢ଼ଇ ବାୟୁ ॥
ଗାଇ ଖାଇଲେ ଯମର ଭେଟ । ୩୭ ।
ଦୈବସ୍ତୁ ଭାବନୀ ଆଶାନ୍ତେ କଥା
ଶୋଭ ନ ଶୋଭ ତୁଷର ଠିଆ । ୩୮ ।

—:*:—

ଡାକ ବଚନ ସମ୍ପୂର୍ଣ୍ଣ

